ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥଙ୍କ
୯୮ତମ ପୁଣ୍ୟ ଜନ୍ମତିଥି ଉପଲକ୍ଷେ....

# ଅଭିନନ୍ଦନିକା

ଡିସେମ୍ବର ୨୫, ୧୯୯୩, ଶନିବାର


*ସଂପାଦନା :*

**ବାସୁଦେବ ସେଠୀ,**
*ସାମ୍ବାଦିକ, ପାରାଦ୍ୱୀପ*

## ଏ ସଂକଳନର ଲେଖକ........

ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟଃ
ଜେନାମଣି ଲକ୍ଷ୍ମୀକାନ୍ତ
ଡକ୍ଟର ଗଙ୍ଗାଧର ବଳ
ଡକ୍ଟର ଇନ୍ଦୁ ମିଶ୍ର
ଶ୍ରୀ ଦିବାକର ମିଶ୍ର
ଶ୍ରୀ ମନମୋହନ ମିଶ୍ର
ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ
ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ
ଶ୍ରୀ ଅନ୍ନଦା ପ୍ରସାଦ ରାୟ
ଶ୍ରୀ ପରମାନନ୍ଦ ଅଧିକାରୀ
ଶ୍ରୀ ରାଜକିଶୋର ରାମ
ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ
ଶ୍ରୀ ନାରାୟଣ ବୀରବର ସାମନ୍ତ
ଶ୍ରୀ ଦୁର୍ଗାଚରଣ ଷଡ଼ଙ୍ଗୀ
ଶ୍ରୀ ବାସୁଦେବ ସାମଲ
ଶ୍ରୀମତୀ ସୁଜାତା ପ୍ରିୟମ୍ବଦା
ଶ୍ରୀ ପ୍ରମୋଦ କୁମାର ମହାପାତ୍ର
ଡକ୍ଟର ପ୍ରସନ୍ନ ପାଟଶାଣୀ
ଶ୍ରୀ ବିଶ୍ୱନାଥ ପଣ୍ଡିତ
ଶ୍ରୀ ହୁସେନ୍ ରବି ଗାନ୍ଧୀ
ଶ୍ରୀ ଦୁର୍ଗାମାଧବ ମିଶ୍ର
ଶ୍ରୀ ହରିହର ବାହିନୀପତି
ଶ୍ରୀ ଅନାଦି ସାହୁ
ଶ୍ରୀ ନିତ୍ୟାନନ୍ଦ ସାମନ୍ତରାୟ
ଶ୍ରୀ କୃଷ୍ଣଚନ୍ଦ୍ର ଭୂୟାଁ
ଶ୍ରୀ ରମେଶ ଭୂୟାଁ

*ଚିତ୍ର ସଜ୍ଜା* — ଶ୍ରୀ ଉମାପ୍ରସାଦ ମିଶ୍ର    *ପ୍ରଚ୍ଛଦପଟ* — ଶ୍ରୀ ବଳଦେବ ମହାରଥା, ଭୁବନେଶ୍ୱର

*ମୁଦ୍ରଣ* — ସଂସାର ପ୍ରେସ, କଟକ - ୯



ରାଷ୍ଟ୍ରଗଠନ ପାଇଁ ଏବେ ବି ଚିନ୍ତାମଗ୍ନ .....




ଶ୍ରୀ ଯୁଧିଷ୍ଠିର ଦାସ
ବାଚସ୍ପତି
ଓଡ଼ିଶା ବିଧାନ ସଭା


ଭୁବନେଶ୍ୱର
ତା ୧୬-୧୨-୯୩

# ଅଭିନନ୍ଦନ

ଦୈନିକ 'ସମାଜ'ର ସମ୍ପାଦକ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ଅଠାନବେ ବର୍ଷରେ ପଦାର୍ପଣ କରିବା ଆମ ସମସ୍ତଙ୍କ ପାଇଁ ଗର୍ବ ଓ ଗୌରବର କଥା । ଜଣେ ସାମ୍ବାଦିକ ଭାବରେ ନୁହେଁ, ଦେଶର ଜଣେ ବର୍ଷୀୟାନ୍ ସ୍ୱାଧୀନତାସଂଗ୍ରାମୀ, ସମାଜସେବୀ ଓ ପୂର୍ବତନ ମନ୍ତ୍ରୀଭାବରେ ରାଧାନାଥବାବୁ ତାଙ୍କର ଦକ୍ଷତା ପ୍ରମାଣିତ କରିଛନ୍ତି । ଅଠାନବେରେ ପାଦଦେଇଥିବାବେଳେ ତାଙ୍କର କର୍ମଚଞ୍ଚଳତା ଓ ନିଷ୍ଠା ଏବେ ମଧ୍ୟ ଜନମାନସକୁ ଉଦ୍‌ବେଳିତ କରିଚାଲିଛି ।

ଆଜି ତାଙ୍କର ଶୁଭ ଜନ୍ମଦିନରେ ତାଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି ।

( ଯୁଧିଷ୍ଠିର ଦାସ )

# ସଂପାଦକୀୟ

ପୂଜ୍ୟ ରାଧାନାଥବାବୁ ଆଜ ୯୮ ବର୍ଷ ବୟସରେ ପଦାର୍ପଣ କରୁଛନ୍ତି । ଏହା କେବଳ ଆମ୍ଭମାନଙ୍କ ପାଇଁ କାହିଁକି, ସମଗ୍ର ରାଜ୍ୟବାସୀଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ । ସେଥିପାଇଁ ତାଙ୍କୁ ଅଭିନନ୍ଦନ ଜଣାଇବା ନିମନ୍ତେ ଅନେକ ଆୟୋଜନ ମଧ୍ୟରେ "ଅଭିନନ୍ଦନିକା" ଗ୍ରନ୍ଥଟି ଅନ୍ୟତମ । ଏଥିରେ ଯେ ରାଧାନାଥବାବୁଙ୍କର ସମଗ୍ର କର୍ମମୟ ଜୀବନର ଇତିହାସ ରହିଛି ତାହା ନୁହେଁ, ବରଂ ତାଙ୍କର ବହୁମୁଖୀ ପ୍ରତିଭା ସାମାନ୍ୟତମ ଭାବରେ ମୂଲ୍ୟାୟନ କରାଯାଇଛି । କାରଣ ପୂଜ୍ୟପୂଜା ଆମ ସଂସ୍କୃତିର ପରମ୍ପରା ହୋଇ-ଥିବାରୁ ଉପଯୁକ୍ତ ପ୍ରତିଭାକୁ ଆଦର ସମ୍ମାନ କରିବାର ଏହାହିଁ ପ୍ରୟାସ ମାତ୍ର । ଏହାଦ୍ୱାରା କେବଳ ଯେ ରାଧାନାଥବାବୁଙ୍କୁ ସମ୍ମାନ କରାଯାଉଛି ତାହା ନୁହେଁ, ବରଂ ଆମ ସଂସ୍କୃତିର ଆମେ ଉପଯୁକ୍ତ ଦାୟାଦ ଭାବରେ ସଂସ୍କୃତିକୁ ସମ୍ମାନ କରୁଛୁ, ଏଥିରେ ସନ୍ଦେହ ନାହିଁ ।

ତେବେ ରାଧାନାଥବାବୁଙ୍କର ଆଜ ୯୮ତମ ଜୟନ୍ତୀ ଅବସରରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ବାସ୍ତବରେ ସେ ହେଉଛନ୍ତି ଜଣେ କର୍ମଯୋଗୀ ଓ ଆମ ସଂସ୍କୃତିର ଏକ ପ୍ରଚଣ୍ଡ ପ୍ରତିଭା । ତେଣୁ ଏହି ପ୍ରତିଭାସମ୍ପନ୍ନ ରାଧାନାଥବାବୁଙ୍କୁ ପ୍ରଣାମ ଜଣାଇ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନାକରୁଛୁ ସେ ଶତାୟୁ ପୁରୁଷ ହୁଅନ୍ତୁ ।

**ସାମ୍ବାଦିକ କଲ୍ୟାଣପାଣ୍ଠି**—ଅଭିନନ୍ଦନିକା ସଂକଳନ କମିଟି ଉଦ୍ୟମରେ ଗତ ଆଠ ବର୍ଷ ହେଲା ଏକ ସାମ୍ବାଦିକ କଲ୍ୟାଣ ପାଣ୍ଠି ଗଠନ କରାଯାଇ ପ୍ରକାଶିତ ବିଜ୍ଞାପନ ବାବଦରୁ ଲବ୍ଧ ଅର୍ଥ ଏଥିରେ ଜମା କରାଯାଇଛି । ଏହି ସମୟ ମଧ୍ୟରେ ୫୦ ହଜାର ଟଙ୍କା ଜାତୀୟ-କରଣ ବ୍ୟାଙ୍କରେ ସ୍ଥାୟୀ ଜମା କରାଯାଇଛି । ଏହାର ସୁଧରୁ ପ୍ରତ୍ୟେକ ବର୍ଷ ରାଜ୍ୟର ବିଭିନ୍ନ ଅଞ୍ଚଳର ସାମ୍ବାଦିକମାନଙ୍କୁ ଦୁର୍ଦ୍ଦିନ ସମୟରେ ସାହାଯ୍ୟ ଦିଆଯିବା ଅବ୍ୟାହତ ରହିଛି । ତେବେ ଚଳିତ ବର୍ଷ ଶେଷ ସୁଦ୍ଧା ପ୍ରାୟ ୨୫ ଜଣ ଅଭାବଗ୍ରସ୍ତ ସାମ୍ବାଦିକଙ୍କୁ କଲ୍ୟାଣ ପାଣ୍ଠି ପକ୍ଷରୁ ସାହାଯ୍ୟ ଦିଆଯାଇଛି ।

ଏହାଛଡ଼ା ରାଜ୍ୟର ୫ଜଣ ବୟୋଜ୍ୟେଷ୍ଠ ସାମ୍ବାଦିକ ଶ୍ରୀ ରାମଚନ୍ଦ୍ର ଦାଶ, ସ୍ୱର୍ଗତ ଅଦ୍ୱୈତ ବଲ୍ଲଭ ରାୟ, ସ୍ୱର୍ଗତ ଯୁଗଳ କିଶୋର ପାଣିଗ୍ରାହୀ, ଶ୍ରୀ ଜୟନ୍ତ ଘୋଷ ଓ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କୁ "ସାମ୍ବାଦିକ ଗୌରବ" ଉପାଧିରେ ସମ୍ମାନିତ କରାଯାଇ ସେମାନଙ୍କୁ ନଗଦ ପାଞ୍ଚଶହରୁ ଦୁଇ ହଜାର ଟଙ୍କା ସହ ଉପ-ଢୌକନ ଓ ମାନପତ୍ର ଦିଆଯାଇଛି ।

ଚଳିତ ବର୍ଷର "ସାମ୍ବାଦିକ ଗୌରବ" ପାଇବା ପାଇଁ ବଲାଙ୍ଗୀରର ବରିଷ୍ଠ ସାମ୍ବାଦିକ ଶ୍ରୀ ଶିବପ୍ରସାଦ ପାଣ୍ଡିଆ ମନୋନୀତ ହୋଇଛନ୍ତି ।

## କୃତଜ୍ଞତା ଜ୍ଞାପନ

ଏହି "ଅଭିନନ୍ଦନିକା" ପ୍ରକାଶନ କ୍ଷେତ୍ରରେ ବହୁ ଲେଖକ, କବି, ବନ୍ଧୁ, ଶୁଭେଚ୍ଛୁ ଓ ବିଜ୍ଞାପନ-ଦାତା ସାହାଯ୍ୟ ସହଯୋଗ କରିଥିବାରୁ ମୁଁ ସମସ୍ତଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ବିଶେଷ କରି 'ସମାଜ'ର ସହଯୋଗୀ ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର, ଲୋକସେବକ ମଣ୍ଡଳର କୋଷାଧ୍ୟକ୍ଷ ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ, 'ସମାଜ'ର ବାର୍ତ୍ତାସମ୍ପାଦକ ଶ୍ରୀ ଆନନ୍ଦ କୁମାର ପାଣି, ମୁଖ୍ୟ ପରିଚାଳକ ଶ୍ରୀ ରାମଚନ୍ଦ୍ର ମିଶ୍ର, ଉତ୍କଳମଣି ସମ୍ବାଦପତ୍ର କର୍ମଚାରୀ ସଂଘର ସଭାପତି ଶ୍ରୀ ଦେବପ୍ରସାଦ ମିଶ୍ର, ପ୍ରେସ ଫଟୋଗ୍ରାଫର ଶ୍ରୀ ଉମାପ୍ରସାଦ ମିଶ୍ର ଏବଂ 'ସମାଜ'ର ସମ୍ପାଦକୀୟ ବିଭାଗର ସାମ୍ବାଦିକ ବନ୍ଧୁମାନେ, ବନ୍ଧୁ ଶ୍ରୀ ଅଜୟ କୁମାର ଦାଶ (ସୂର୍ଯ୍ୟୋଦ୍ୟୋଗ), ଶ୍ରୀ ମନୋରଞ୍ଜନ ପଟ୍ଟନାୟକ ଓ ଶ୍ରୀ ଅର୍ଜୁନ ଦାଶଙ୍କ ସମେତ ସାମ୍ବାଦିକ **ଶ୍ରୀ ସତ୍ୟ ରାୟ** ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିଥିବାରୁ ଓ ପରାମର୍ଶ ଦେଇଥିବାରୁ ମୁଁ ସମସ୍ତଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

ଜୟ ଜଗନ୍ନାଥ ।

**ବାସୁଦେବ ସେଠୀ**
ସମ୍ପାଦକ

---

ବି: ଦ୍ର:—'ଅଭିନନ୍ଦନିକା' ପାଇଁ ରାଜ୍ୟର ବିଭିନ୍ନ ସ୍ଥାନରୁ ବହୁ ପ୍ରବନ୍ଧ ଓ କବିତା ଆସିଥିଲେ ହେଁ ସମୟର ସ୍ୱଳ୍ପତା ଦୃଷ୍ଟିରୁ ସେଗୁଡ଼ିକ ପ୍ରକାଶ କରି ନ ପାରି ସମ୍ପୃକ୍ତ ଲେଖକ ଓ ଲେଖିକାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରୁଛୁ । —ସଂପାଦକ



# ଅଭିନନ୍ଦନଷଟ୍କମ୍

ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟଃ

(୧)

ପୂଜ୍ୟ ଶ୍ରୀ ଗୋପବନ୍ଧୁ ପ୍ରିୟତମ ନିପୁଣୋଦାରଦାସ୍ୟାଦବର୍ଯ୍ୟଃ
ନିର୍ଭୀକୋ ମିତବାଗ୍ ଦୃଢ଼ତରହୃଦୟଶ୍ଲୋକକଳାକାଶସୂର୍ଯ୍ୟଃ ।
ଦୀନାନାଥାର୍ତ୍ତିଜାଲାପହରଣକୁଶଳାମ୍ଳାନମତ୍ ସୌମନସ୍ୟଃ
ରାଧାନାଥୋଽୟମଷ୍ଟାଧିକନବତିତମାବ୍ଦେନ ଯୁକ୍ତୋ ନମସ୍ୟଃ ।

(୨)

ବନ୍ୟାଦୁର୍ଭିକ୍ଷଖିନ୍ନାଗଣିତଜନଗଣାନ୍ ଦୈନ୍ୟସଂବଗ୍ନଚିତ୍ତାନ୍
ତ୍ୱଂ ପ୍ରାଜ୍ୟାର୍ଥପ୍ରଦାନୈଃ ସକରୁଣ କୃତବାଂସ୍ତତ୍କ୍ଷଣଂ ସଂପ୍ରହୃଷ୍ଟାନ୍ ।
ସତ୍କୃତ୍ୟେନୈବ ତେନାର୍ଜିତମମଳଯଶୋ ଯତ୍ତ୍ୱୟା ପୁଣ୍ୟକର୍ମନ୍
ନୂନଂ ତଚ୍ଛାଶ୍ୱତଂ ସତ୍ ସୁଜନଗଣମଣେ ସ୍ଥାସ୍ୟତି ତ୍ୟକ୍ତଶର୍ମନ୍ ।

(୩)

ଶୁଦ୍ଧାତ୍ମନ୍ ଧୀରଧୀମଂସ୍ତ୍ୱ କରଯୁଗଳେ ଦତ୍ତବାନ୍ ଯଂ 'ସମାଜ'--
ବାଲଦ୍ରୁଂ ଗୋପବନ୍ଧୁଃ ସୁବିପୁଳଜନତାଚିତ୍ତରାଜାଧିରାଜଃ ।
ସୋଽଦ୍ୟାୟାସୈସ୍ତ୍ୱଦୀୟୈରବିରତବହୁତୈର୍ଲ୍ଲସ୍ୟା ସଂପ୍ରବୃଦ୍ଧଃ
ଶାଖାଜାଲୈର୍ବିଶାଳୈର୍ଯୁତ ଇହ ବ୍ୱ ମହାଭୂରୁହଃ ସୁପ୍ରସିଦ୍ଧଃ ।

(୪)

ଦେଶପ୍ରୀତ୍ୟା ମହତ୍ୟାପ୍ରତିହତନିରବଚ୍ଛିନ୍ନକର୍ମାନୁରକ୍ତ୍ୟା
ମିତ୍ୟାସକ୍ତ୍ୟା ଯଶସ୍ୱୀ ତ୍ୱମସି ଭୁବି ପୁନର୍ଭୋଗରାଜାଦ୍ୱିରକ୍ତ୍ୟା ।
ଲବ୍ଧ୍ୱା ତ୍ୱାଂ ଯୋଗ୍ୟସୂନୁଂ ଭବତି ଜନଭୁବଃ କାମନାୟାଃ ପ୍ରପୂର୍ତ୍ତିଃ
ନୃଣାଂ ଚିତ୍ତେ ସଦା ତେ ଜନକୁଶଳମତେ ଦ୍ୟୋତତେ ଭାବମୂର୍ତ୍ତିଃ ।

(୫)

ପୀୟୂଷସ୍ୱାଦଦାତ୍ରୀ ସକଳଗୁଣବତାଂ ଭୀତିଦା ଦୁର୍ମଦାନାମ୍
ଆଲୋକସ୍ତମ୍ଭକଳ୍ପା ସୁବିଦିତବିଦୁଷାମେବ ସାମ୍ପାଦକାନାମ୍ ।
ଦୁର୍ନୀତ୍ୟା ଭୂରିବିଶ୍ୱଜନନିରତଧିୟାଂ ହୃତ୍ପ୍ରକମ୍ପଂ ସୃଜନ୍ତୀ
ନୀଷ୍ଣାନାଂ ଶିକ୍ଷୟିତ୍ରୀ ଜୟତୁ ତବ ଗୁରୋ ଲେଖନୀ ଦୀପ୍ତଶକ୍ତିଃ ।

(୬)

ନୀଳାକୂପାରକୂଳେ ବିଦଳିତପତିତୋଦ୍ଧାରକର୍ମାଭିଳାଷୀ
ସାନନ୍ଦଂ ସାଗ୍ରହୋ ଯୋ ନିବସତି ସୁଚିରଂ ସିନ୍ଧୁକନ୍ୟାବିଳାସୀ ।
କାରୁଣ୍ୟେନୈବ ତସ୍ୟାଖିଳକଦନଦନଚ୍ଛେଦନଖ୍ୟାତକୀର୍ତ୍ତେଃ
ଦୀର୍ଘାୟୁଃ ସ୍ୱାସ୍ଥ୍ୟଭୋଗୀ ଭବ ଭବଭବନେ ତ୍ୟାଗକାରୁଣ୍ୟମୂର୍ତ୍ତେ ।

ଅଧ୍ୟକ୍ଷଃ, ଶେଖରେଶ୍ୱର ସଂସ୍କୃତ ବିଦ୍ୟାଳୟଃ,
ଲଥାଙ୍ଗ, ରାହାମା, ଜଗତ୍ସିଂହପୁର



# ଯାହାଙ୍କ ପାଇଁ ଓଡ଼ିଶା ଓ ଓଡ଼ିଆ ଗର୍ବିତ

**କେନାମଣି ଲକ୍ଷ୍ମୀକାନ୍ତ**

## 'ହେ ପ୍ରିୟ ଓଡ଼ିଆଜ୍ ! ତୁମପାଇଁ ଓଡ଼ିଶା ଓ ଓଡ଼ିଆ ଗର୍ବିତ ।'

ମାଛ ସମୁଦ୍ରରେ ଥାଏ, ଅଥଚ ସମୁଦ୍ରର ଗଭୀରତା ଓ ବିସ୍ତୃତି କେତେ ତାହା ଜାଣିପାରେ ନାହିଁ । ପ୍ରବାଦ ପୁରୁଷ ଏବଂ ପ୍ରଥିତଯଶା ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥଙ୍କର ବ୍ୟକ୍ତିତ୍ୱ ଏଭଳି ବହୁମୁଖୀ, ପରିବ୍ୟାପ୍ତ ଓ ସୁବିଖ୍ୟାତ ଯେ ତାହାର ସମ୍ପୂର୍ଣ୍ଣ ଆକଳନ ଏତେ ସହଜ ଓ ସୁଲଭ ନୁହେଁ । ନିଜର ଚଉସ୍ତରି ବର୍ଷବ୍ୟାପୀ ନିରବଚ୍ଛିନ୍ନ ତପସ୍ୟା, ଅସୀମ ଧୈର୍ଯ୍ୟ ଓ କର୍ମଯୋଗ ନେଇ ଆପଣାର ଭଗ୍ନସ୍ୱାସ୍ଥ୍ୟ ଓ ଉତ୍ତରଣ ବାର୍ଦ୍ଧକ୍ୟ ସତ୍ତ୍ୱେ ସେ ଏବେବି କର୍ମଠ ଓ ଚଳଚଞ୍ଚଳ । ସେ ଏଭଳି ଏକ ବଗିଚା ଯାହା ମଧ୍ୟରେ ଭରିରହିଛି ରୁଚିସ୍ନିଗ୍ଧ ବହୁ ଫୁଲ ଆଉ ଗୁଳ୍ମଗଛ, ଯାହା ତାଙ୍କ ଅଜାଣତରେ ଓଡ଼ିଆର ମୁଖସ୍ତବକ ହୋଇ ପ୍ରତି ସଞ୍ଜ ଓ ପ୍ରତି ସକାଳରେ ଫୁଟିଉଠେ । ଯେଉଁ ଫୁଲବାଡ଼ିରେ ପ୍ରଜାପତି ରଙ୍ଗିନ ଡେଣା ମେଲାଇ ଏ ଫୁଲରୁ ସେ ଫୁଲକୁ ଉଡ଼ି ବୁଲୁଥାଏ । ଦସ୍ୱାକୃ ପବନ ଚୁମି ଯାଉଥାଏ ସେହି ମନୋରମ ଉଦ୍ୟାନର ପ୍ରତି ଫୁଲ, ପ୍ରତି ଗୁଳ୍ମଗଛ ଓ ପ୍ରତିଟି ଲତାକୁ । ଡକ୍ଟର ରାଧାନାଥ ରଥ ଓଡ଼ିଶା ଓ ଓଡ଼ିଆ ଚେତନାର ଅପ୍ରତିଦ୍ୱନ୍ଦ୍ୱୀ ସାରଥି ଓ ଅଭିରଥ । ସେ ଉତ୍କଳମଣି ଗୋପବନ୍ଧୁଙ୍କର ଚଳନ୍ତି ପ୍ରତିମା, ଉତ୍କଳଗୌରବ ମଧୁସୂଦନଙ୍କର ଜାତୀୟ ଚେତନାର ଉତ୍ତର ଦାୟାଦ, ଏ ଜାତିର ଜନକ ଗାନ୍ଧିଜୀଙ୍କର ଅନନ୍ୟ ଅନୁଗତ ଓ ପଟ୍ଟଶିଷ୍ୟ । ତାଙ୍କର ବ୍ୟକ୍ତିତ୍ୱ ଯେଭଳି ଲୋକପ୍ରିୟ ସେହିଭଳି ପ୍ରଖ୍ୟାତ । ସେ ସାଢ଼େ ତିନିକୋଟି ଓଡ଼ିଆଙ୍କର ଅଗ୍ରପୂଜ୍ୟ ଜଣେ ପ୍ରିୟ ଓଡ଼ିଆଜ୍, ଯାହାଙ୍କ ପାଇଁ ସମଗ୍ର ଓଡ଼ିଶା ଓ ସବୁ ଓଡ଼ିଆ ଗର୍ବିତ ।

## 'କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।'

ପୁଣ୍ୟଶ୍ଲୋକ ଗୋପବନ୍ଧୁଙ୍କର ଅନୁରକ୍ତ ପଟ୍ଟଶିଷ୍ୟ ରୂପେ ଡଃ ରଥ ୧୯୧୯ ଅକ୍ଟୋବର ୪ ତାରିଖରେ ଗୁଇଁବସା ଜଙ୍ଗଲର ସରକାରୀ ଚାକିରି ଛାଡ଼ି ଗୋପବନ୍ଧୁଙ୍କର ସହକର୍ମୀରୂପେ ଯୋଗ ଦେଇଥିଲେ । ପୁରୀର ମରିଚକୋଠ୍ ଗଳିରୁ ସତ୍ୟବାଦୀ, ସତ୍ୟବାଦୀରୁ କଟକର ନିମଚଉଡ଼ିସ୍ଥିତ ପାଲିତ୍‌ପଡ଼ା ଓ ପାଲିତ୍‌ପଡ଼ାରୁ ବକ୍ସିବଜାରସ୍ଥିତ ଗୋପବନ୍ଧୁ ଭବନ ଯାଏ ଦୀର୍ଘ ୭୪ ବର୍ଷ ଧରି ଡଃ ରଥଙ୍କର କର୍ମମୟ ଜୀବନ ଅଦ୍ୟାବଧି ନିରବଚ୍ଛିନ୍ନ ଭାବେ ପ୍ରତ୍ୟର୍ପିତ । ସମାଜର ପରିଚାଳନା ସମ୍ପାଦକ ରୂପେ ଏବଂ ସମ୍ପାଦକ ରୂପେ କେବଳ ନୁହେଁ ପରନ୍ତୁ ଲୋକସେବକ ମଣ୍ଡଳର ସଞ୍ଚାଳକ, ଲୋକପ୍ରତିନିଧି, ମନ୍ତ୍ରୀ, ଏବଂ ଜନସ୍ୱାର୍ଥ ଜାଗ୍ରତପ୍ରହରୀ ରୂପେ ତାଙ୍କର କର୍ମଯୋଗ ଯେଭଳି ଉଲ୍ଲେଖନୀୟ, ତାଙ୍କର ସଂକଳ୍ପ ଓ ଲବ୍ଧସାଫଲ୍ୟ ସେହିଭଳି ଅଭିନନ୍ଦନୀୟ । ସେ ଏଭଳି ଜଣେ ଯୋଗାରୂଢ଼ ଏବଂ ଯୋଗଜନ୍ମା କର୍ମଯୋଗୀ ଯାହାଙ୍କ ପାଇଁ କର୍ମହିଁ ଜୀବନ ଓ ଶ୍ରମହିଁ ଉପାସ୍ୟ । ସେ ଯଥାସାଧ୍ୟ ଫଳ ଓ ଇନ୍ଦ୍ରିୟ ସୁଖର

ଲାଳସା ତଥା ମୋହ ପରିହାରପୂର୍ବକ ନିଜକୁ ତ୍ୟାଗ, ତିତିକ୍ଷା, ମୂଲ୍ୟଭିତ୍ତିକ ଆଦର୍ଶ ଓ କର୍ମ-ଯୋଗରେ ନିର୍ବିକାର ଭାବେ ନିଜକୁ ପ୍ରତ୍ୟର୍ପିତ କରିଆସିଛନ୍ତି ପ୍ରତିକ୍ଷଣ ପ୍ରତିଟି ମୁହୂର୍ତ୍ତ । ମାଟି ସୁନା, ଖ୍ୟାତି ନିନ୍ଦା, ବିକ୍ଷୋଭ, ପ୍ରଶଂସା ଫୁଲମାଳ ଅଥବା ଯୋତାମାଳ ସବୁକୁ ସମାନ ଭାବେ ବରି ନେଇଛନ୍ତି ନିଜର କର୍ମଯୋଗରେ । ନ ଖୋଜି ସେ ଖୋଜିଛନ୍ତି ନିରନ୍ନ ଓ ଦୁର୍ଭିକ୍ଷଗ୍ରସ୍ତ ଏବଂ ବନ୍ୟାକ୍ଲିଷ୍ଟ ପ୍ରତି ଅସହାୟ ଓଡ଼ିଆକୁ । ନ କହି ନ କହି ସେ ସବୁବେଳେ କହିଛନ୍ତି ମୂକ ଓଡ଼ିଆର ଦୁଃଖ-ଦୈନ୍ୟର ଅକୁହା କାହାଣୀ ଏବଂ ଅନ୍ୟାୟ ଓ ଅସତ୍ୟ ବିରୁଦ୍ଧରେ ସେ ପ୍ରକ୍ଷେପ କରିଛନ୍ତି ନିଜର ଆଗ୍ନେୟ ସ୍ଫୁଲିଙ୍ଗଭରା ବଜ୍ରବାଣୀ । ସେ ଚଳନ୍ତି ଶତାବ୍ଦୀର କୃତ୍ତିସାର ଏବଂ କୃତ୍ତିବାସ ଯାହାଙ୍କର କୀର୍ତ୍ତି ଓ କୃତିର ଖ୍ୟାତି ଯେଭଳି ଅନନ୍ୟ, ସେହିଭଳି ଅଦ୍ୱିତୀୟ । ବାସ୍ତବରେ ସେ ନିଜେ ହିଁ ଆପଣାର କର୍ମଯୋଗର ଏକ ଜୀବନ୍ତ କୀର୍ତ୍ତିସୌଧ । ଏଥି-ପାଇଁ ବୋଧହୁଏ ପୁଣ୍ୟଶ୍ଳୋକ ଗୋପବନ୍ଧୁ ଯଥାର୍ଥରେ ଲେଖିଥିଲେ—

"ମଣିଷ ଜୀବନ ନୁହଇଁ କେବଳ
ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

## 'ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର : ପାରିଲେ ଫିଙ୍ଗି ବା ମିଳନ୍ତା ନିସ୍ତାର ।'

ସ୍ମୃତିପଟକୁ ଯଦି ଗୋଟାଏ ସ୍ଲେଟ୍ ସହ ତୁଳନା କରାଯାଏ, ତାହେଲେ ସେହି ସ୍ଲେଟ୍‌ର ବହୁ ସ୍ମୃତିଲେଖା ସମୟର ପାଣିକନା ପୋଛି ଲିଭାଇ-ଦିଏ, ଅଥଚ ସ୍ଲେଟ୍‌ର କଣ୍ଟାଗାର ସହଜରେ ଲିଭେନାହିଁ । ଯୋଗଜନ୍ମା ଡଃ ରାଧାନାଥ ରଥଙ୍କର ବ୍ୟକ୍ତିତ୍ୱ ଓ ଅବଦାନ ସେହିଭଳି ଓଡ଼ିଆର ସ୍ମୃତି-ପଟରେ ଅମ୍ଳାନ ଏବଂ ଅବିସ୍ମରଣୀୟ । ସେ ପ୍ରବହମାନ, ପୁଣ୍ୟତୋୟା ମହାନଦୀର ସ୍ରୋତ ଯାହା ପାଣିରେ ସୂର୍ଯ୍ୟ ଓ ଚନ୍ଦ୍ର ନିଜ ନିଜର ପ୍ରତିରୂପ ଦେଖନ୍ତି । ସେବା ଓ ତିତିକ୍ଷାର ସେ ଏକ କୈବଲ୍ୟ ବଜାର, ଏବଂ ଜାତି ନିର୍ଘୋଷର ଅଭିରଥ ଓ ସାରଥି । ସେ ଉତ୍କଳୀୟ ଚେତନାର ମୁଖ୍ୟ ଉତ୍ସ ସ୍ୱୟଂ ଉତ୍ସନପାଦ । ସେ ଉତ୍କଳମଣିଙ୍କର ସୁଯୋଗ୍ୟ ଉତ୍ତରଦାୟାଦ । ନିଜେ ନଚିକେତାର ରୂପାନ୍ତର । ନିଜେ ତ୍ୟାଗର ଧର୍ମପଦ । କେହି ସଂପୂର୍ଣ୍ଣ ନିଷ୍କଳଙ୍କ ନୁହେଁ—ଚନ୍ଦ୍ରରେ କଳଙ୍କ ରହିଛି—ଯେଉଁଭଳି ସଂକଟ କୋଣରେ ଉଦାସୀନତା ଓ ସ୍ୱର ପରିବର୍ତ୍ତନ ଏବଂ ପୁଣ୍ୟଶ୍ଳୋକଙ୍କ ଶେଷ ଅଭୀପ୍‌ସାର ରୂପାୟନରେ ତଥାକଥିତ ଏକତରଫା ଆବେଦନଜନିତ ଦୋଷା-ରୋପରେ ଡକ୍ଟର ରଥଙ୍କୁ ସମାଲୋଚନା କରନ୍ତି—ଏହା ଅମୂଳକ କହି ଉଡ଼ାଇ ହେବନି । ତା ସତ୍ତ୍ୱେ ସିଏ ଅଜାତଶତ୍ରୁ ଓ ଅଗ୍ରପୂଜ୍ୟ । ରାଜନୀତି, ଦେଶ-ସେବା, ସମାଜକଲ୍ୟାଣ, ସାରସ୍ୱତ-ସାଧନା, ଅତୁଳନୀୟ ସାମ୍ବାଦିକ ପରାକାଷ୍ଠାର ସେ ନିଜେ ହିଁ ଆପଣାର ଉପମା ଓ ଉପମେୟ । ସେ ନିଜେ ଅଜାତଶତ୍ରୁ ଓ ଅଜେୟ । ବହୁ ବିଶେଷତ୍ୱ ବିଶେଷଣ, କିମ୍ବଦନ୍ତୀର ଜୀବନ୍ତ ଉତ୍ସ । ତାଙ୍କର ଅବଦାନକୁ କିଏ ଅସ୍ୱୀକାର କରିପାରେ ? କେଉଁ ଲେଲିହାନ ଅଗ୍ନିଶିଖା ତାକୁ ପୋଡ଼ି ନିଶ୍ଚିହ୍ନ କରିପାରିବ ? କେଉଁ ତୀକ୍ଷ୍ଣ ତରବାରି ସେହି ଜୀବନ୍ତ ସ୍ମୃତିସୌଧକୁ ବିଖଣ୍ଡିତ କରିପାରିବ ? ସେ ନିଜେ କାଳଜୟୀ, ଏବଂ ସ୍ମୃତିଜୟୀ । ସ୍ମୃତିଜୟୀର ବିସ୍ମରଣ କାହିଁ ? ଭୁଲିବାର ଅଥବା ଉପେକ୍ଷା କରିବାର ଅନ୍ୟ ନାମ ହେଉଛି ସ୍ମୃତିର ଜଞ୍ଜିରରେ କେବଳ ତାଙ୍କୁ ଅନାଗତ ବହୁ ଶତାବ୍ଦୀ ପାଇଁ ସ୍ମୃତିର ସଙ୍ଗୀଳ ରୂପେ ଆପଣେଇ ନେବା । ଏଇଥିପାଇଁ ବୋଧହୁଏ କବିବର ରାଧାନାଥ ରାୟ କହିଛନ୍ତି,

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର,
ପାରିଲେ ଫିଙ୍ଗି ବା ମିଳନ୍ତା ନିସ୍ତାର ।"

## 'ଜନ୍ମତିଥିର ଆଶାବରୀ'
## ଭୂୟଶ୍ଚ ଶରଦ ଶତଂ :

ସହସ୍ରଶୀର୍ଷା ଶିଖର ପୁରୁଷ ଉତ୍କଳର ରଥ ଆପଣାର ଭଗ୍ନସ୍ୱାସ୍ଥ୍ୟ ଓ ଉତ୍ତରଣ ବାର୍ଦ୍ଧକ୍ୟ ନେଇ ଆଗାମୀ ଡିସେମ୍ବର ୭, ୧୯୯୩ରେ ଅଠାନବେ ବର୍ଷରେ ପଦାର୍ପଣ କରିବାକୁ ଯାଉଛନ୍ତି । ତିନିପୁରୁଷର ଏହି ପ୍ରଥିତଯଶା ରାଷ୍ଟ୍ରପୁରୁଷ ଦୁଇ ଶତାବ୍ଦୀର ସାଥୀ ସମର୍ଥ ଓ ପ୍ରତ୍ୟକ୍ଷଦର୍ଶୀ ରୂପେ ଆମ ଗହଣରେ ଏବେ ବି ସକ୍ରିୟ ଓ ଚଳମାନ— ଯାହାଙ୍କର ମନପ୍ରାଣ ପ୍ରତି ରକ୍ତକଣିକା ଓଡ଼ିଶାର ଓ ଓଡ଼ିଆର ଚିନ୍ତା ଚେତନାରେ ଯେଭଳି ପ୍ରତ୍ୟର୍ପିତ ସେହିଭଳି ରୁଚିସ୍ନିଗ୍ଧ ଶାରଦୀୟ ସୌନ୍ଦର୍ଯ୍ୟରେ ସମ୍ପୃକ୍ତ ଗୋଧୂଳିମୟ । ଉତ୍କଳର ଅପ୍ରତିଦ୍ୱନ୍ଦ୍ୱୀ ନେତା ଓ ନୟୂନ ସ୍ୱୟଂ ଜଗନ୍ନାଥ ଡଃ ରଥଙ୍କୁ ଆଗାମୀ ଶତାବ୍ଦୀର ପ୍ରଥମ ଦଶନ୍ଧି ଯାଏ ଦୀର୍ଘାୟୁ କରନ୍ତୁ । ଭଗବତୀ-ଭାରତୀ ତାଙ୍କର ବାଣୀ ଓ ବର୍ଣ୍ଣାଳୀର ଶବ୍ଦ ଓ ଅର୍ଥ ପ୍ରକାଶକୁ ଆହୁରି ଶକ୍ତିପ୍ରଦ ଓ ଋଦ୍ଧିମନ୍ତ କରନ୍ତୁ । ଭାସ୍କର ତାଙ୍କୁ ତେଜସ୍ୱୀ କରନ୍ତୁ । ବରୁଣଦେବ ଆପଣାର ବୀର୍ଯ୍ୟ ପ୍ରଦାନ କରି ତାଙ୍କୁ ବୀର୍ଯ୍ୟବାନ କରନ୍ତୁ ଏବଂ ଇନ୍ଦ୍ର ନିଜ ଓଜରେ ତାଙ୍କୁ ଓଜସ୍ୱୀ କରନ୍ତୁ—ଏହି ବୈଦିକ ପ୍ରାର୍ଥନା । କିମଧିକମ୍ :—

"ପଶ୍ୟେମ ଶରଦଃ ଶତମ୍ଂ
ଜୀବେମ ଶରଦଃ ଶତମ୍ଂ
ଭୂୟଶ୍ଚ ଶରଦଃ ଶତମ୍ଂ
ପ୍ରବହାମ୍ ଶରଦଃ ଶତମ୍ଂ
ଅଦନା ସାମ୍ୟ ଶରଦଃ ଶତମ୍ଂ ।"

(ଶୁକ୍ଳ ଯଜୁର୍ବେଦ) ।

କବି ଭାରତୀ, କଳ୍ପନାଂଚଳ, କ୍ୟାଲକାଟା ସୁଇଟ୍ସ ଲେନ, ଭୁବନେଶ୍ୱର-୭



# ପଶ୍ୟେମ ଶରଦଃ ଶତମ୍

## ଡକ୍ଟର ଗଙ୍ଗାଧର ବଳ

ଅତୀତର ବହୁ କର୍ମଯୋଗୀ ସ୍ଥିତପ୍ରଜ୍ଞ ନିର୍ଭୀକ ଓ ସ୍ୱାଧୀନଚେତା ପୁତ୍ରଙ୍କୁ କୋଳରେ ଧାରଣ କରି ଭାରତ ଜନନୀଙ୍କର ବକ୍ଷ ସ୍ଫୀତ । ଇତିହାସ ପୃଷ୍ଠାର ବହୁ ତାତ୍କାଳିକ ଚମକ୍ସୃଷ୍ଟିକାରୀ ବ୍ୟକ୍ତିଙ୍କର କ୍ଷଣିକ ଉଦ୍ଭାସ ଅନନ୍ତ କାଳଗର୍ଭରେ ଲୀନ ହୋଇଯାଇଛି; କିନ୍ତୁ ସେବା, ତ୍ୟାଗ, ପ୍ରେମ, ମାନବିକତା ଓ ନିର୍ଭୀକତାର ପ୍ରତୀକ କେତେକ ପୁରୁଷଙ୍କର ତେଜ କାଳ ନିଷ୍ପ୍ରଭ କରିପାରିବ ନାହିଁ । ବାଳଗଙ୍ଗାଧର ତିଳକ୍, ଲାଲା ଲାଜପତ୍ ରାୟ୍, ମହାତ୍ମା ଗାନ୍ଧୀ ଓ ଉତ୍କଳମଣି ଗୋପବନ୍ଧୁ : ଏଇ ତ୍ୟାଗୀ ବୀରମାନେ ଭାରତର ଜଣେ ଜଣେ ପ୍ରବାଦ-ପୁରୁଷ ।

ସେମାନଙ୍କର ଉପଯୁକ୍ତ ଦାୟାଦଭାବରେ ବର୍ଷୀୟାନ୍ ସାମ୍ବାଦିକ, ଲୋକସେବକ ପଦ୍ମଭୂଷଣ ଠାକୁର ରାଧାନାଥ ରଥ ଆଜି ଅଗଣିତ ଉତ୍କଳବାସୀଙ୍କ ସମକ୍ଷରେ ଭୀଷ୍ମ ପିତାମହ । ଦୁର୍ଭିକ୍ଷ- ମରୁଡ଼ି- ବନ୍ୟାକ୍ଳିଷ୍ଟ, ଅନ୍ୟ ବହୁ ସମସ୍ୟାପୀଡ଼ିତ ଉତ୍କଳ-ଜନନୀଙ୍କର ଅଶ୍ରୁଳ ଅନ୍ତରଙ୍ଗ ରୂପକାର ଠାକୁର ରଥ; କେବଳ ଅଭାବ ଓ ଦୈନ୍ୟରେ ସମ୍ବେଦନାର ଅଶ୍ରୁମୁଞ୍ଚନ କରି ନୁହେଁ; ସମାଜ ଓ ରାଷ୍ଟ୍ରରେ ଦୁର୍ନୀତି, ଭ୍ରଷ୍ଟାଚାର ଓ ଅନ୍ୟାୟ ବିରୁଦ୍ଧରେ ଶାଣିତ ଲେଖନୀ ଚାଳନା କରି ଜାତିପ୍ରାଣରେ ଅହରହ ଚେତାବନୀ ସଞ୍ଚରିତ କରିବାରେ ବ୍ୟକ୍ତିତ୍ୱ ତାଙ୍କର ଚଳ-ଚଞ୍ଚଳ । ଅସଭ୍ୟତା ଓ ବର୍ବରତାର ମୁଖା ଖୋଲି ପ୍ରକୃତ ପୁରୁଷକାରର, ପ୍ରକୃତ ମାନବିକତାର ମନ୍ତ୍ର ଉଚ୍ଚାରଣ କରିଚାଲିଛି ତାଙ୍କର ଆତ୍ମା ଲୋକ-ସେବକ ମଣ୍ଡଳର ମୁଖପତ୍ର 'ସମାଜ'ରେ, ସମାଜର 'ସାପ୍ତାହିକୀ' ଓ ସାହିତ୍ୟ ତଥା ସଂସ୍କୃତିମୂଳକ ପତ୍ରିକା 'ସତ୍ୟବାଦୀ'ରେ । ଦେଶ ତଥା ଜାତିର ବୈଷୟିକ-ସମୃଦ୍ଧି-ସ୍ୱପ୍ନରେ ତାଙ୍କର କଳ୍ପନା ସୀମିତ ନୁହେଁ, ଆମର ଗୌରବୋଜ୍ଜ୍ୱଳ ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକତାର ଆଦର୍ଶରେ ଦେଶର ଭାବୀ ଦାୟାଦ କିପରି ଦେଶ-ମାତୃକାର ମୁଖ ଉଜ୍ଜ୍ୱଳ ରଖିବେ, ଏଇ ବ୍ୟାକୁଳ ଅନୁପ୍ରେରଣା ସଞ୍ଚାରିତ ହେଉଛି ତାଙ୍କର ଲେଖାରେ, ତାଙ୍କର ଆବେଗଜଡ଼ିତ ବାଣୀରେ ।

ଅତୀତରେ ଲୋକପ୍ରତିନିଧି ଭାବରେ ଜାତିର ସେବା କରିବା ସଙ୍ଗେ ସଙ୍ଗେ ସେ ମନ୍ତ୍ରୀ ଭାବରେ ପ୍ରଶାସନ କ୍ଷେତ୍ରରେ ନିଜର ନିରପେକ୍ଷତା, ନିର୍ଭୀକତା ଓ ଅସାଧାରଣ ଦକ୍ଷତାର ପରିଚୟ ଦେଇ ଆସିଛନ୍ତି । ସେ ସମଗ୍ର ଭାରତରେ ଜଣେ ସୁଦକ୍ଷ ସେବକ ଭାବରେ ପରିଚିତ ହେବା ସଙ୍ଗେ ସଙ୍ଗେ ସ୍ୱକୀୟ ଆନ୍ତରିକ ସେବା ଓ କର୍ମକୁଶଳତା ହେତୁ ଲୋକସେବକ ମଣ୍ଡଳର ସଭାପତି ପଦ ଅଳଂକୃତ କରିବା କମ୍ ଗୌରବର ବିଷୟ ନୁହେଁ । ସେ ବହୁ ଭାରତୀୟ ତଥା ଉତ୍କଳୀୟ ଅନୁଷ୍ଠାନ ପକ୍ଷରୁ ସମ୍ମାନିତ ହୋଇଥିଲେ ମଧ୍ୟ ସେ ସମ୍ପର୍କରେ ତାଙ୍କର ନିରଭିମାନତା, ତାଙ୍କର ପ୍ରଜ୍ଞା-ପ୍ରଖର ବ୍ୟକ୍ତିତ୍ୱକୁ ଅଧିକ ମଧୁର କରିଛି ।

ଆଜି ବୟସର ଭାରରେ ତାଙ୍କର ଅଙ୍ଗ-ପ୍ରତ୍ୟଙ୍ଗ ହୁଏତ ଦୁର୍ବଳ ହୋଇପାରେ, କିନ୍ତୁ

ଆମ୍ଭାରେ ତାଙ୍କର ଶତସିଂହର ଦୃପ୍ତ ତେଜ । ଏଇ ବର୍ଷୀୟାନ୍ ଖ୍ରିଷ୍ଟ ପିତାମହ ଆଜ ଉତ୍କଳର ଅଗଣିତ ଗୁଣଗ୍ରାହୀ ବ୍ୟକ୍ତିଙ୍କର ନମସ୍ୟ, କେତେ ଆଶା ଭରସାର ସ୍ଥଳ ।

ଏ ଜାତିର ଶିଥିଳ ପ୍ରାଣରେ ଦୃପ୍ତ-ସିଂହର ବଳ ସଞ୍ଚାର କରି ତାଙ୍କର ଲେଖନୀ ଓ ବାଣୀ ନିଷ୍କାମ କର୍ମ ଓ ପ୍ରଜ୍ଞାର ମନ୍ତ୍ର ଉଚ୍ଚାରଣ କରି-ଚାଲିଥାଉ; ଆମର ମନ୍ତ୍ର-ଦ୍ରଷ୍ଟା ଋଷିକଣ୍ଠ ଉଚ୍ଚାରିତ ଶାଶ୍ବତ ବାଣୀ ଅନୁକ୍ରମେ ସୁସ୍ଥଶରୀରରେ ସେ 'ଅଷ୍ଟୋତ୍ତର ଶରଦଃ ଶତମ୍'ର ସୌଭାଗ୍ୟ ଲଭ କରନ୍ତୁ : ଭଗବାନଙ୍କ ନିକଟରେ ଏହାହିଁ ଐକାନ୍ତିକ ପ୍ରାର୍ଥନା ।

ଅବସରପ୍ରାପ୍ତ ପ୍ରଫେସର୍,
ଜନାନା ହସ୍‌ପିଟାଲ୍ ରୋଡ୍, ବ୍ରହ୍ମପୁର-୧, ଗଞ୍ଜାମ



# ବିଶ୍ୱାସ-ବର୍ତ୍ତିକା

**ଡକ୍ଟର ଇନ୍ଦୁ ମିଶ୍ର**

ଆଶା ଆଉ ବିଶ୍ୱାସରେ
ସ୍ନେହ ଓ ସଦିଚ୍ଛାରେ ଭରପୂର
ତୁମ ଜୀବନର ଧାର
ସକାଳର କଅଁଳ ସୂର୍ଯ୍ୟାଲୋକ ସାଥିରେ
ଦୁଃଖ ଓ ବେଦନାକୁ ସାଉଁଟି ନେଇ
ଢ଼' ପହରର ଖରାରେ କ୍ରମଶଃ ଅଭଙ୍ଗ ହୁଏ;
ତୁମର ସ୍ୱାକ୍ଷର ।

ଅପରାହ୍ଣର କାକରତାରେ
ଅସ୍ତସୂର୍ଯ୍ୟର ଆଭାରେ ଫୁଟିଉଠେ
ସମସ୍ତର ଦୀପ୍ତ ରୂପରେଖା,
ଇତିହାସର ରକ୍ତ-ପତ୍ରରେ
ଲିପିବଦ୍ଧ ହୁଏ ତୁମ ଇସ୍ତାହାର
କାଳର ଘୂର୍ଣ୍ଣିରେ 'ସମାଜ' ଓ ସଂହତିର ।

ସ୍ଥିର ତରଙ୍ଗ ଭଳି
ବିପ୍ଳବର ତେଜୀୟାନ୍ ଭୂମିରେ;
ବହୁ ଯନ୍ତ୍ରଣା ଓ କଷାଘାତର
ହାହାକାର ପରେ
ଦେଖ—କପରି ମୁଞ୍ଜରି ଉଠିଛି ଏବେ
ବକୁଳ ବନର ସ୍ବର ।

ଗରିମା ଓ ଗାମ୍ଭୀର୍ଯ୍ୟରେ
ସ୍ୱପ୍ନ ଓ ସଂବେଦନାର
ସାକାର ଲିପିରେ
କର୍ମ ଓ କବିତ୍ୱର ସୁଗନ୍ଧାସାରରେ ।

ରମାଦେବୀ ମହିଳା କଲେଜ, ଭୁବନେଶ୍ବର-୭



# ଅବ୍ୟକ୍ତ ବେଦନା

## ପ୍ରଭାକର ମିଶ୍ର

ସଂଗ୍ରାମୀ, ସମାଜସେବୀ, ସଂଗଠକ, ସାମ୍ବାଦିକ, ସାହିତ୍ୟିକ ଓ ସର୍ବହରାଙ୍କର ସାହାଯ୍ୟଦାତା ତଥା 'ସମାଜ' ସମ୍ପାଦକ ପୂଜ୍ୟ ରାଧାନାଥ ରଥ ଆଜି ୯୮ ବର୍ଷରେ ପଦାର୍ପଣ କରୁଥିବା, ଆମ ଗଡ଼ଜାତ-ମୋଗଲବନ୍ଦୀ ମିଶି ବିଶାଳ ଓଡ଼ିଶା ରାଜ୍ୟ ପକ୍ଷେ ଓ 'ସମାଜ' ପରିବାର ପକ୍ଷେ କମ୍ ଗୌରବର କଥା ନୁହେଁ । ଏହା ତାଙ୍କର ନିଷ୍ଠା ଏବଂ ଉତ୍ସର୍ଗୀକୃତ ଦୃଢ଼ତା ଯୋଗୁଁ ପରମାତ୍ମା ପରମେଶ୍ୱରଙ୍କର ଅପାର କରୁଣା ବୋଲିବାକୁ ହେବ ।

ଜନ୍ମ-ମରଣ-ବିରଷାର ସଠିକ୍ ସମୟ ପରମେଶ୍ୱରଙ୍କ ବ୍ୟତିରେକେ କିଏ କହିବ ? ତେବେ ଆମେ ରାଧାନାଥବାବୁଙ୍କର ନିରୋଗ, ନିର୍ମଳ ଦୀର୍ଘ ଜୀବନ କାମନା କରୁଛୁ ।

ସତ କହିବାକୁ ଗଲେ—ମୁଁ ଯାହା ଦେଖୁଛି, ରାଧାନାଥବାବୁ ବୟସବୃଦ୍ଧିର ପ୍ରଭାବରେ ଥାଇ ମଧ୍ୟ "ସମାଜ" ଅନୁଷ୍ଠାନ ଏବଂ ପରିବାରର ଅଭିବୃଦ୍ଧି ପାଇଁ ଯେଉଁ ବ୍ୟାକୁଳତା ପ୍ରକାଶକରୁଛନ୍ତି ତାହା କାର୍ଯ୍ୟକାରୀ ହୋଇପାରୁନାହିଁ । ତାଙ୍କୁ ଖାଲି ଭୁଆଁ ବୁଲାଇ କେତେକ କ୍ଷମତାଲୋଭୀ ନ୍ୟସ୍ତସ୍ୱାର୍ଥବାଦୀ 'ସବୁ ହୋଇଯିବ, ହେବା ଉପରେ ଅଛି, ଆପଣ ଚିନ୍ତା କରନ୍ତୁ ନାହିଁ' ବୋଲି କହି ଚାଲିଛନ୍ତି । ଏଣେ ସମାଜ ପରିବାର ମଧ୍ୟରେ ଅସନ୍ତୋଷ କ୍ରମବର୍ଦ୍ଧିଷ୍ଣୁ ଅବସ୍ଥାରେ ରହିଲାଣି । ପୁଂଜୀଭୂତ ଅସନ୍ତୋଷର ବିସ୍ଫୋରଣ କେତେବେଳେ ଯେ ହେବ କିଏ କହିବ ? ଏପରି ଅବସ୍ଥା 'ସମାଜ' ପରିବାରର ମଧ୍ୟରେ ହେଉଥିବା କଥା ରାଧାନାଥବାବୁ ତାଙ୍କ ଦିବ୍ୟଚକ୍ଷୁରେ ଓ ଜ୍ଞାନରେ ଦେଖୁଥିଲେ ମଧ୍ୟ କିଛି କରିପାରିବା ଅବସ୍ଥାରେ ନାହାନ୍ତି । ଦୁଃଖରେ ଓ କ୍ଷୋଭରେ କେବଳ ଅଶ୍ରୁମୋଚନ କରୁଛନ୍ତି ।

ଯେଉଁ ରାଧାନାଥବାବୁ ଯୌବନକୁ ପଳ ପଳ କରି ପୁଣ୍ୟାତ୍ମା ଗୋପବନ୍ଧୁଙ୍କ "ସମାଜ"ର ଶ୍ରୀବୃଦ୍ଧି, ବିତ୍ତବୃଦ୍ଧି ପାଇଁ ଦାନ କରି, ନିଜେ 'ସମାଜ' ଧରିକରି ସାଙ୍ଗ ଖରା, ତରା, ବର୍ଷା, ଶୀତ କାକରରେ କେତେ-ବେଳେ ସାଇକେଲ ଅବା ଚାଲିକରି 'ସମାଜ'କୁ ଲୋକପ୍ରିୟ କରି ଆଜିକାର ଅବସ୍ଥାରେ ପହଞ୍ଚାଇ ପାରିଛନ୍ତି, ସେହି ରାଧାନାଥବାବୁଙ୍କ କଥା ଓ ଉପଦେଶ କେହି ଶୁଣୁନାହାନ୍ତି । ମଫସଲର ସମ୍ବାଦସଂଗ୍ରହ ପାଇଁ ଯେଉଁମାନଙ୍କୁ ରାଧାନାଥବାବୁ କିଛି ପାରିଶ୍ରମିକ ଦେଇ ରଖିଥିଲେ, ଆଜି ସେହି ସାମ୍ବାଦିକମାନେ ପାରିଶ୍ରମିକ ପାଇବାରୁ ବଞ୍ଚିତ ହୋଇପଡ଼ିଛନ୍ତି । ସୁଦୂର ଦିଲ୍ଲୀରୁ "ହୁକୁମ" ନ ଆସିଲେ କିଛି ହୋଇ-ପାରୁନାହିଁ । ରାଧାନାଥବାବୁ ମଫସଲିଆ ସାମ୍ବାଦିକ-ମାନଙ୍କୁ ଯେଉଁ ସର୍ବନିମ୍ନ ପାରିଶ୍ରମିକ ଦେଉଥିଲେ, ପର୍ବପର୍ବାଣିରେ ବୋନସ୍ ଦେଉଥିଲେ, ତାହା ଆଜି ଦିଆଯାଉ ନାହିଁ । ଭେକ ଉପାସରେ ରାଧାନାଥ-ବାବୁଙ୍କ ମୁହଁକୁ ଚାହିଁ ଗୋଟି ଶ୍ରମିକ ପରି ସାମ୍ବାଦିକ ବନ୍ଧୁମାନେ ସମାଜକୁ ସାହାଯ୍ୟ କରି ଚାଲିଛନ୍ତି ।

ପ୍ରଶ୍ନ ଉଠୁଛି, ଆଗରୁ ସମାଜ ପରିବାର କପରି ଆତ୍ମସମ୍ମାନ ରକ୍ଷାକରି ଚାଲି ଆସୁଥିଲା ଓ ଆଜି କାହିଁକି ଏପରି ବିଶୃଙ୍ଖଳା ସୃଷ୍ଟିହେଉଛି ? ଏ ନାଟର ଗୋବର୍ଦ୍ଧନ କିଏ ? ଏହି ବିରାଟ ପ୍ରଶ୍ନର ଉତ୍ତର ଖୋଜି ବାହାର କରିବାକୁ ପଡ଼ିବ ।

ସେ ଯାହା ହେଉ, ରାଧାନାଥବାବୁ ଆମର ମୁରବି । ଆମେ ଭେକଲପେଟରେ ରହି ଗୋଟି ଶ୍ରମିକ ଭାବେ କାମ କରୁଥିଲେ ମଧ୍ୟ ତାଙ୍କର ସୁସ୍ଥ ଓ ଶାନ୍ତିମୟ ଜୀବନ କାମନା କରୁଁ ।

ସଭାପତି, ଓଡ଼ିଶା ସମାଜ ପ୍ରତିନିଧି ସଂଘ





## ଆଶୀର୍ବାଦ କର



**ମନମୋହନ ମିଶ୍ର**

ହେ ନିପୀଡ଼ିତ ଓଡ଼ିଶାର
କ୍ଲାନ୍ତିହୀନ କର୍ମଯୋଗୀ ସୁତ
କରୁଣାର ଭଗୀରଥ
ରାଧାନାଥ ରଥ ।

ମନେପଡ଼େ
ବିକ୍ଷୋଭିତ ନିକଟ
ଓ ସୁଦୂର ଅତୀତ
ବିସ୍ମୃତ ଏ 'ସମାଜ' ସୌଧର
ସାଧକ-କୌଷ୍ଠର
ସେ ତାପସ ବ୍ରତ !

ମନେପଡ଼େ,
ପ୍ରଜାମେଳ
ଓଡ଼ିଶାର ଅନ୍ଧଗଳି
ଦୁଃଖୀ ଗଡ଼ଜାତ

ମନେପଡ଼େ କାରାଗାର
ବାରମ୍ବାର
ବାତ୍ୟା, ବନ୍ୟା, ଦୁର୍ଭିକ୍ଷ ଓ ଅନାହାର
ମନେପଡ଼େ ରିଲିଫ୍‌ର
ଅଯାଚିତ ସ୍ରୋତ
ମମତାର କୈବଲ୍ୟ ଅମୃତ !

ଆଜି ଦେଖେ ଦାରୁଣ ଦୁଃସ୍ୱପ୍ନ
ଘନ ଘୋର ଅନ୍ଧକାର
ଅପାର୍ଥିବ ଅଶୁଭ ହୁଙ୍କାର
ପ୍ରକୃତିର ଭୂକମ୍ପନେ
ଥରଇ ଭାରତ,
ତାହାଠାରୁ ବଳି କମ୍ପି ଉଠେ
ସାମାଜିକ ନିନାଦ ଆରତ ।

ପୃଥିବୀର ମାତୃଜାତି
କରେ ହାହାକାର
ନଗର ଓ ଗ୍ରାମ ଜନପଦେ
ଅଶ୍ଳୀଳ ଜୀବନଯାତ୍ରା,
କନ୍ଦର୍ପ ସିତ୍କାର
ଶତ ଶତ ଶହୀଦର ଅତୀତର
ଦେଶପ୍ରେମୀ ଲହୁ
ଲୁହ ହୋଇ ବହେ ଧାର ଧାର
ଏହି ଭାରତର
ବସ୍ତ୍ରହୀନା ପାଞ୍ଚାଳୀର ଭାଗ୍ୟଲକ୍ଷ୍ମୀ
ହୁଏ ନାରଖାର ।

ଏହି ସେ ଭାରତ ମାତୃଜାତି ପୃଥିବୀର
ଦୁନିଆର ରାଜପଥେ
ନଉଛାଳି ଘିନ ଦେଖାଦାର !
ସର୍ବନାଶ ! ସର୍ବନାଶ !

ଅତୀତରୁ ବର୍ତ୍ତମାନ ଆୟୁଷ୍ମାନ
ହେ ତପସ୍ୱୀ ଇତିହାସ୍
ଆଶୀର୍ବାଦ କର
ଜନ୍ମନେଉ ତୁମ ଭଳି, ତହୁଁ ବଳି
ଶତ ଶତ ସନ୍ନ୍ୟାସୀର ଦଳ ।

ଏଇ ବୀରପ୍ରସୂ ସ୍ୱର୍ଣ୍ଣଭୂମି
କରୁଁ ସ୍ୱାର ସ୍ୱସାବ ନକାଶ
ଶତକୋଟି ଭରତୀୟ ଯୋଦ୍ଧୃର ନଃଶ୍ୱାସ ।

ନତ୍ୟ ଉଚ୍ଛ୍ୱସିତ ହେଉ
ଉଦ୍‌ଭାସିତ ହେଉ ଏଇ ମାଟି ଓ ଆକାଶ
ଜନ୍ମ ଲଭୁ ଶତ ଶତ ଗୋପବନ୍ଧୁ ଦାସ
ଘେନ ନମସ୍କାର
ଆଶୀର୍ବାଦ କର
କର୍ମଯୋଗୀ ମହାମେରୁ ଜନତାର
ମମତାର ଭଗୀରଥ
ରାଧାନାଥ ରଥ
ଘେନ ନମସ୍କାର ଆଶୀର୍ବାଦ କର ।



# ବ୍ୟକ୍ତି ନୁହେଁ, ଇତିହାସ

ଗିରିଜାଭୂଷଣ ପଟ୍ଟନାୟକ

ଶ୍ରୀ ରାଧାନାଥ ରଥ ଯେ ଆଉ ଏକ ବ୍ୟକ୍ତି ନୁହନ୍ତି, ସେ ଯେ ଏ ଜାତିର ଇତିହାସ, ଏହା ସହିତ ସମସ୍ତେ ଏକମତ । କାରଣ ତିନି ଶତାବ୍ଦୀ ଦେଖିଥିବା ଲୋକ ବୋଧହୁଏ ମିଳିବା କଠିନ । କେବଳ ଓଡ଼ିଶାରେ କାହିଁକି, ସାରା ଭାରତବର୍ଷରେ ମଧ୍ୟ ବିରଳ । ପ୍ରବାହିତ ସମୟର ଏକ ନିର୍ଦ୍ଦିଷ୍ଟ ସନ୍ଧିକ୍ଷଣରେ ଜନ୍ମ ନ ହେଲେ ଏବଂ ଏକ ସୁଦୀର୍ଘ ଜୀବନ ନ ପାଇଲେ ତିନି ଶତାବ୍ଦୀ ଦେଖିବା ସମ୍ଭବ ଆଦୌ ନୁହେଁ । ତାଙ୍କର ଜୀବନୀ ହେଉଛି ଓଡ଼ିଶାର ଶହେବର୍ଷର ଇତିହାସ ।

ଜୀବନର ବହୁ ବିଭାଗକୁ ସେ ସ୍ପର୍ଶ କରି ଯାଇଛନ୍ତି । ସରକାରୀ ଚାକିରି, ସାମ୍ବାଦିକତା, ସ୍ୱାଧୀନତା ଆନ୍ଦୋଳନ, ଗଡ଼ଜାତ ଆନ୍ଦୋଳନ, ଶାସନ ବିଧାନସଭା, ରେଡକ୍ରସ, ସ୍କାଉଟସ୍, ସଂସ୍କୃତି, ରିଲିଫ, ସମାଜସେବା କିଛି ବାଦ୍ ଯାଇନାହିଁ । ସେ ଆପଣାର ସ୍ମୃତିକୁ ଲିପିବଦ୍ଧ କରି ଯାଉନାହାନ୍ତି । ଏହା ତାଙ୍କର ଆତ୍ମଜୀବନୀ ନୁହେଁ, ଉତ୍ତର ପୁରୁଷ ପାଇଁ ରେକର୍ଡ ବା ଅଭିଲେଖ । ସେ ଏହା ନ କରି ଏ ଜାତିକୁ ଦରିଦ୍ର କରି ଯାଉଛନ୍ତି । କିନ୍ତୁ ପରିବାର-ଠାରୁ ଆରମ୍ଭ କରି ସହଯୋଗୀ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରସ୍ତାବକୁ ସେ ଏଡ଼େଇ ଦେଇଛନ୍ତି । କାଳେ ତାଙ୍କର 'ସ୍ମୃତିକଥା' କାହାର ମନରେ ଆଘାତ କରିପାରେ, ବୋଧହୁଏ ସେଇ ହେଉଛି ମୁଖ୍ୟ କାରଣ ।

ରାଧାନାଥବାବୁଙ୍କ ଲାଇବ୍ରେରୀ ସଂଗୃହୀତ କାଗଜପତ୍ର, ପାଇଥିବା ଚିଠି ସବୁ ଏ ଜାତିର ବିରାଟ ସମ୍ପଦ । ତାହାର ଡକୁମେଣ୍ଟେସନ୍ କରିବାର ବେଳ ଆସିଛି । କାରଣ ରାଧାନାଥବାବୁ ଅଧିକ ଅକ୍ଷମ ହୋଇଗଲେ ବା ତାଙ୍କ ଅନ୍ତେ ସେ ବିରାଟ ସାମଗ୍ରୀର ଡକୁମେଣ୍ଟେସନ ସହଜ ହେବ ନାହିଁ । ତାଙ୍କର ସକ୍ରିୟ ସହଯୋଗ ଏଥିପାଇଁ ଏକାନ୍ତ ଆବଶ୍ୟକ । ଲୋକସେବକମଣ୍ଡଳ ଖାଲି ଖବରକାଗଜ ବୁଝିଲେ ଦାୟିତ୍ୱ ସମ୍ପୂର୍ଣ୍ଣ ହେବ ନାହିଁ । ଇତିହାସ ସେମାନଙ୍କ ଉପରେ ଏ ଦାୟିତ୍ୱ ଅର୍ପଣ କରିଛି ।

ରାଧାନାଥବାବୁଙ୍କୁ ଯାଇ ବାରମ୍ବାର ତାଙ୍କର ନିଦ୍ରା, ତାଙ୍କର ବିଶ୍ରାମରେ ବ୍ୟାଘାତ କରିବାକୁ ଆଜିକାଲି ଇଚ୍ଛା ହୁଏନା । ସେ ଥାଆନ୍ତୁ. ସେଇ ଆମ ପାଇଁ ଯଥେଷ୍ଟ । କାରଣ ସେ ଥିବା ଏବଂ ନ ଥିବା ଭିତରେ ଯେଉଁ ଶୂନ୍ୟତା ସୃଷ୍ଟି ହେବ, ତାହା ଭାବି ହୁଏନା, ଭାବିବାକୁ ଭୟ ହୁଏ । ଯଦିଓ ଜନ୍ମିଲେ ମରଣ ସତ୍ୟ ନୁହେଁ ଖଣ୍ଡିବାର ।

ରାଧାନାଥବାବୁଙ୍କ ସହିତ ବେଶ୍ କିଛି ବର୍ଷ ଖୁବ୍ ନିବିଡ଼ ଭାବରେ କାର୍ଯ୍ୟ କରିବାର ସୁଯୋଗ ପାଇଛି । ତାଙ୍କର ଅସୀମ ସ୍ନେହ, ଶ୍ରଦ୍ଧା ପାଇବାର ଗୌରବ ମିଳିଛି । ଅନେକ ଲୋକଙ୍କର ଈର୍ଷା ହୋଇଛି । ସେମାନେ ଭାବନ୍ତି ଯେ ରାଧାନାଥବାବୁଙ୍କର ନିଜସ୍ୱ ଯେମିତି କିଛି ନାହିଁ । ରାଧାନାଥବାବୁଙ୍କୁ

ଖୋଲା ସଭାରେ ଅଭଦ୍ର, ଅଶ୍ଳୀଳ ଭାଷାରେ ଗାଳି-ଦେବା ବ୍ୟକ୍ତିମାନଙ୍କୁ ଦେଖିଛୁ । "ଝିଟିପିଟି, ତାକୁ ମାରଦଅ ପିଟିପିଟି । ଆଖି ଦ'ଟି ତାର ଯାଉ ଫୁଟି" ବୋଲି ଶୁଣିଛୁ । ପୁଣି ସେଇ ଲୋକଙ୍କୁ ରାଧାନାଥ-ବାବୁଙ୍କ ଗୋଡ଼ତଳେ ଅଧିଆ ପଡ଼ିବା ଦେଖିଛୁ । ସମୟର କି ନିଷ୍ଠୁର ପରିହାସ ! ରାଧାନାଥବାବୁ କିନ୍ତୁ ସେଦିନ ଗାଳି କଥା ଶୁଣିଲାବେଳେ ଯେମିତି ହାତ ଯୋଡ଼ି ଠାକୁରଙ୍କୁ ଡାକୁଥିଲେ, ଆଜି ଗୋଡ଼ତଳେ ପଡ଼ିଲାବେଳେ ଠିକ୍ ସେଇପରି । ଗାଳି ଓ ପ୍ରଶଂସାର ଊର୍ଦ୍ଧ୍ୱକୁ ଚାଲିଯିବା ବ୍ୟକ୍ତି କେତେ ଜଣ ? ସେ ନିର୍ବିକଳ୍ପତା ପାଇବା ପାଇଁ ସାଧନା କରିବାକୁ ପଡ଼େ ।

ମୋର ମନରେ ଅନେକ ପ୍ରଶ୍ନ ଉଠିଚି ଓଡ଼ିଶାର ଇତିହାସ ସମ୍ପର୍କରେ । କାହିଁକି ଏ ସାମରିକ ଜାତି ନିର୍ବେଦ ହୋଇଗଲା ? କାହିଁକି ଓଡ଼ିଆ ଜାତିର ମୁକୁଟହୀନ ସମ୍ରାଟ ମଧୁସୂଦନ ଦାସ ବଙ୍ଗଳା ଭାଷାରେ କଥାବାର୍ତ୍ତା କରୁଥିଲେ ? ଏଇପରି ଅନେକ ପ୍ରଶ୍ନ । ତା' ଭିତରୁ ଗୋଟାଏ ପ୍ରଶ୍ନ ହେଉଛି ଯେ ଗୋପବନ୍ଧୁ ଦାସଙ୍କ ପରଲୋକ ବେଳକୁ 'ସମାଜ' ସହିତ ବହୁ ବନ୍ଧୁବାନ୍ଧବ ଜଡ଼ିତ ଥିଲେ । ହରିହର ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ମିଶ୍ର ପ୍ରଭୃତି । ରାଧାନାଥବାବୁ ସେମାନଙ୍କ ତୁଳନାରେ ବୟସରେ ବା ମେଧାରେ ବହୁ କନିଷ୍ଠ । ତଥାପି ସେମାନେ ସମସ୍ତେ 'ସମାଜ' ଛାଡ଼ି ଚାଲିଗଲେ କିନ୍ତୁ ରାଧାନାଥବାବୁ ରହିଗଲେ । ଏହା ସମ୍ଭବ ହେଲା କିମିତି ? କେହି ଏହାର ସଠିକ୍ ବା ମୋ ମନ ପାଇଲା ଭଳି ଉତ୍ତର ଦେଇପାରିନାହାନ୍ତି । କେବଳ ଜଣେ ଦୁଇଜଣଙ୍କଠାରୁ ତାର ଉତ୍ତର ମନକୁ ପାଉଛି ଏବଂ ନିଜ ଅଭିଜ୍ଞତାରୁ ତାହା ଠିକ୍ ବୋଲି ଭାବୁଛି । ତାହା ହେଉଛି ମେଥଡ଼ିକାଲ କାର୍ଯ୍ୟ ଏବଂ ପ୍ରତି କାର୍ଯ୍ୟର ସବୁ ଦିଗକୁ ଠିକନିଖି ଦେଖିବା । ବିନୋଦ କାନୁନଗୋ, ଜଷ୍ଟିସ୍ ହରିହର ମହାପାତ୍ର ଏବଂ ଶରତ ପଟ୍ଟନାୟକଙ୍କଠାରୁ ଏହି ପ୍ରକାର ଉକ୍ତି ଶୁଣିଥିଲି ।

୧୯୮୨ ମସିହା ରିଲିଫ ବେଳର କଥା । ଗୋଟିକ ପରେ ଗୋଟାଏ ଟ୍ରକ୍ ଯାଉଛି । ଦଳ ପରେ ଦଳ ଚାଲିଛନ୍ତି । ରାଧାନାଥବାବୁ ନିଶ୍ଚୟ ଦେଖିବେ ଯେ ଦାଆସିଲି, ମହମବତି, ଗାଈମାନଙ୍କ ପାଇଁ ଖାଦ୍ୟ ଏବଂ ଘାସ ଯାଇଛି ନା ନାହିଁ । ଅନେକ ସମୟରେ ଆଶ୍ଚର୍ଯ୍ୟ ହୋଇଛି । ବୁଢ଼ାର ଏକ ଜିଦ୍ ! କିନ୍ତୁ କାର୍ଯ୍ୟକ୍ଷେତ୍ରକୁ ଯାଇ ଦେଖିଛି ସତରେ ଏଇ ଜିନିଷଟାର ଗୁରୁତ୍ୱ ବହୁତ ବେଶୀ । ମଣିଷ ପାଇଁ ଖାଦ୍ୟ ପଦାର୍ଥ ଯାଇପାରେ । ଗାଈ ଗୋରୁଙ୍କ କଥା କିଏ ମନେକରୁଛି ? କିନ୍ତୁ ସେମାନେ ମରିଗଲେ ପିଲାଙ୍କ ପାଇଁ ଦୁଧ ଏବଂ ରିଲିଫ ପରବର୍ତ୍ତୀ ସମୟରେ ଅବସ୍ଥା କଣ ହେବ ? ଆମ ଅର୍ଥନୀତିଟା ପରା ଗାଈବଳଦଙ୍କ ଉପରେ ନିର୍ଭର କରେ । ଦାଆସିଲି, ମହମବତି କଥା ତ ଜଳଜଳ ଦିଶିଗଲା ।

ଏଇ ଗୋଟିଏ ମାତ୍ର ଉଦାହରଣ ।

ରାଧାନାଥବାବୁଙ୍କ ବ୍ୟକ୍ତିଗତ ସ୍ନେହ ଅଫୁରନ୍ତ । ସମସ୍ତେ ଜାଣନ୍ତି ଯେ ମୋର ଜାତି, ଧର୍ମ କିଛି ନାହିଁ । ତଥାପି ଶୁଣିଛି ତମେ କରଣ । ରାଧାନାଥ ବାବୁଙ୍କ ବ୍ରାହ୍ମଣପ୍ରୀତି ବହୁତ । ତମେ କିମିତି ତାଙ୍କର ଏତେ ବିଶ୍ୱାସଭାଜନ ହେଲ ? ଏହାର କୌଣସି ଉତ୍ତର ନାହିଁ । ମୁଁ ପ୍ରଥମେ ପ୍ରଥମେ ସ୍ୱର୍ଗତ ଫକୀର ଦାସଙ୍କ ଉଦାହରଣ ଦେଉଥିଲି । ପରେ କେବଳ ହସିଦେବା ଛଡ଼ା ଆଉ କିଛି କହିବାର ନ ଥିଲା । ଆଜି ମଧ୍ୟ ସେକଥା ମନେପଡ଼ିଲେ ସେଇ ହସ ଉକୁଟିଯାଏ ମୁହଁଉପରେ । କାରଣ ତାଙ୍କର ସ୍ନେହ, ବସି ଖୁଆଇବା, ବ୍ୟକ୍ତିଗତ କଥା ବୁଝିବା କେବେ ଭୁଲି ହେବ ନାହିଁ । ରିଲିଫ କାର୍ଯ୍ୟ ପାଇଁ ରାଧାନାଥ ରଥ ନାମକ ବୃକ୍ଷକୁ କାଟିବା ପାଇଁ ପ୍ରଥମେ ଗିରିଜା ପଟ୍ଟନାୟକ ନାମକ ଭାଲୁକୁ

କାଟିବା ପାଇଁ କଣ୍ଟି ବ୍ୟକ୍ତି ସ୍ଥିର କଲେ । ମୋ ସ୍ତ୍ରୀ ଅଧାପିକା କମଳକୁମାରୀ ପଟ୍ଟନାୟକଙ୍କୁ ବ୍ରହ୍ମପୁର ଖଲିକୋଟ କଲେଜକୁ ରାତାରାତି ବଦଳି କରାଗଲା ଯଦ୍ୟପି ସେଠାରେ ଅନୁରୂପ ପଦବୀ ନ ଥିଲା । ଶିକ୍ଷାମନ୍ତ୍ରୀ ଗଙ୍ଗାଧର ଭାଇନା ଏଥିରେ ସମ୍ମତ ନ ଥିଲେ ତଥାପି ବଦଳି ହେଲା । ସ୍ତ୍ରୀ ଗଲେ ଛୁଟିରେ । ତାଙ୍କର ଦରମା ଆମର ଏକମାତ୍ର ସମ୍ବଳ । ରାଧାନାଥବାବୁଙ୍କ ବ୍ୟଥା ମୁଁ ଦେଖିଛି । ତେଣୁ ଆଜ ଯେତେବେଳେ ସେ ପବ୍ଲିକ୍ ସର୍ଭିସ କମିଶନର ସଭ୍ୟ ହେଲେ, ରାଧାନାଥବାବୁଙ୍କର ଆନନ୍ଦ ଓ ଆଶୀର୍ବାଦ ଦେଖେ କିଏ ? ଗଙ୍ଗୁ ଭାଇନା ମଧ୍ୟ ସେ ଆନନ୍ଦରେ ଉତ୍ଫୁଲ୍ଲ ।

ରାଧାନାଥବାବୁଙ୍କର ଏ ସ୍ନେହ କେବଳ ମୋ ପାଇଁ ନୁହେଁ । ବହୁ ବ୍ୟକ୍ତିଙ୍କ ପାଇଁ ପ୍ରଯୁଜ୍ୟ । ଜାତି ଧର୍ମ, ବର୍ଣ୍ଣ ଏବଂ ଦଳ ନିର୍ବିଶେଷରେ ।

ସେ ଏ ଜାତିର ପିତାମହ । ପିତାମହ ଭୀଷ୍ମ ପରି ସେ ଯୁଯୁତ୍ସୁ, ସବୁ ଦଳ, ଗୋଷ୍ଠୀର ପିତାମହ । ସେ ରହନ୍ତୁ ଆମ ଭିତରେ ବହୁ ବହୁ ବର୍ଷ ଧରି । ଏଇ କାମନା ।

୫ ୟୁନିଭର୍ସ, ମୈତ୍ରୀସରଣୀ, କଟକ-୧



# ତାର ଜୟଗାନ କର ଅବିରତ

କୃଷ୍ଣଚନ୍ଦ୍ର ତ୍ରିପାଠୀ

କାରାର ଗହ୍ୱରେ ସଡ଼ି ସଡ଼ି କାଳ କାଳ କାଳ
ଦେଶର ଜାତିର ସ୍ୱପ୍ନ ଦେଖିଛି ଯେ ବାର ବାର ।

ବକ୍ଷର ଶୋଣିତ ଦେଇ ଯେ ଆଣିଛି ସ୍ୱାଧୀନତା
ଯା ପାଇଁ ଦେଶର ମାଟି ଦର୍ପଭରେ କହେ କଥା ।

ଦେଶ ପାଇଁ ଗର୍ବ ଆଜ ଗଉରବ
ଯେ ଧରି ରଖିଛି ବାରେ ନ ହୋଇ ନିଷ୍ପ୍ରଭ ।

ବ୍ରିଟିଶର ପାଦତଳୁ ଛିନ୍ନ କରି ସେ ଶୃଙ୍ଖଳ
ଏ ଦେଶକୁ ଆଗୁଆନ କରିଛି ଯେ ବରାବର ।

ସେ ମାଟିର ବୀର୍ଯ୍ୟବନ୍ତ ପୁଅ ରାଧାନାଥ ରଥ
ଦେଶବାସୀ ତାର ଜୟଗାନ କର ଅବିରତ ।

ବନ୍ୟା ଅବା ମହାମାରୀ ପଡ଼ିଥିଲେ କେବେ କାହିଁ,
ହୃଦୟ ତା କାନ୍ଦଉଠେ ସେହି ଏକା ଯାଏ ଧାଇଁ ।

ଏ ମହାଦେଶର ଜଣେ କଏ ହେଲେ ନାରଖାର,
ସହିପାରେ ନାହିଁ ସିଏ ଲୋଡ଼େ ତାର ପ୍ରତିକାର ।

ଜୀବନ ଦେଇଛି ସେ କବି ଶିଳ୍ପୀ ସାହିତ୍ୟକ,
ସକଳକୁ ଆପଣାର କରିଛି ଜୀବନଯାକ ।

ସମାଜର ସେବାରେ ଯେ ଦେଇଛି ପରାଣ ମନ
ତାହା ଭଳି ପୁଅଟିଏ ପାଇବା କଠିନତମ ।

ସେ ମାଟିର ବୀର୍ଯ୍ୟବନ୍ତ ରାଧାନାଥ ରଥ,
ଦେଶ-ବାସୀ କର ତାର ଜୟଗାନ ଅବିରତ ।

ଦେଶରେ ଯେ ସୁଖ ଦୁଃଖ ଅତ୍ୟାଚାର ଅନାଚାର
କାଗଜ ପୃଷ୍ଠାରେ ଲେଖି ପାରିଛି ଯେ ବହୁବାର ।

ସାମ୍ବାଦିକଟିଏ ହେବା ନୁହଁଇ ସହଜ କଥା
କେତେ ମାନ ଅପମାନ ନୀରବ ଜୀବନ ବ୍ୟଥା ।

ସହିବାକୁ ହୁଏ ସତେ ? ସାମ୍ବାଦିକ ଜୀବନର
ଗୌରବ ଧରିଛି ସିଏ ନାହିଁ ଦେଇ ଅବସର,

ସେ ମାଟିର ବୀର୍ଯ୍ୟବନ୍ତ ପୁଅ ରାଧାନାଥ ରଥ,
ଦେଶ-ବାସୀ ତାର ଜୟଗାନ କର ଅବିରତ ।

କବିକୁଟୀର, ବାଣପୁର,



# ନିତ୍ୟପ୍ରବୃତ୍ତ ବର୍ତ୍ତମାନ ଡକ୍ଟର ରାଧାନାଥ ରଥ

ଅନ୍ନଦା ପ୍ରସାଦ ରାୟ

୯୮ ବର୍ଷ ବୟସ୍କ, ଶତ ଶରତର ଯାତ୍ରୀ ଡକ୍ଟର ରାଧାନାଥ ରଥ ଏକ ଚଳମାନ ଜ୍ଞାନକୋଷ, ଏକ ବହୁଚର୍ଚ୍ଚିତ, ବହୁମୁଖୀ ଓ ବହୁଦର୍ଶୀ ବିରାଟ ବ୍ୟକ୍ତିତ୍ୱ । ଏକ ବ୍ୟକ୍ତିତ୍ୱର ଚରମ ପ୍ରକାଶ ଆଜି ଆମ ଗହଣରେ ଅଛନ୍ତି ଏବଂ ତାଙ୍କୁ ଆମେ ଅଭିନନ୍ଦନ ଜଣାଇବା ପାଇଁ ସୁଯୋଗ ପାଇଛୁ, ଏହା ଆମ ପକ୍ଷରେ କମ୍ ସୌଭାଗ୍ୟର କଥା ନୁହେଁ । ଓଡ଼ିଶାରେ ଏଭଳି ଗୋଟିଏ ବ୍ୟକ୍ତି ଯେ ଏକ ଗଣଶକ୍ତିର ଆଧାର ଓ ଯିଏ ଏବେ ଗୋଟିଏ ଶତାବ୍ଦୀର ସୀମା ସ୍ପର୍ଶ କରିବାକୁ ଯାଉଛନ୍ତି, ସେହି ଅବକାଶରେ ତାଙ୍କର ଅନ୍ତର୍ଦର୍ଶୀ ବ୍ୟକ୍ତିତ୍ୱ ସମ୍ପର୍କରେ ଅନୁଧ୍ୟାନ କରୁଛୁ । ଓଡ଼ିଶାର ସଂସ୍କୃତିର ସେ ମୂର୍ତ୍ତିମନ୍ତ ପ୍ରତୀକ, ଏକ ଉତ୍ସର୍ଗୀକୃତ ଜୀବନ । ଓଡ଼ିଆ ନବଜାଗରଣ ପର୍ବର ସେ ଜଣେ ଅଗ୍ରଦ୍ରଷ୍ଟା ପଥପ୍ରଦର୍ଶକ । ଗୋଟିଏ କଥାରେ କହିଲେ ସେ ଓଡ଼ିଶାର ବିବେକରକ୍ଷକ । ସେ ଯାହା କହନ୍ତି ତାହାହିଁ ଓଡ଼ିଶାର ଭାଷା, ଯାହା ଲେଖନ୍ତି ତାହାହିଁ ଓଡ଼ିଆ ସାହିତ୍ୟ । ଓଡ଼ିଶାର ସାମ୍ବାଦିକତା ଓ ରାଜନୀତିକୁ ସେ ନୂତନ ମୋଡ଼ ଦେଇଛନ୍ତି । ଉତ୍କଳମଣି ଗୋପବନ୍ଧୁଙ୍କୁ ଆମେ ନ ଦେଖିଲେ ମଧ୍ୟ ତାଙ୍କୁ ତାଙ୍କରି ଭିତରେ ଦେଖିବାକୁ ପାଉ । ଶତାୟୁ ହେବା କିଛି ବଡ଼ କଥା ନୁହେଁ, କିନ୍ତୁ ଶତ ସହସ୍ର ମୁଖରେ ପ୍ରଶଂସିତ ହେବାଭଳି ସେ ଗୋଟିଏ ମଣିଷ, ଯେ କୋଟି ଜନତାର ସୁଖ ଦୁଃଖ ବୁଝନ୍ତି । ଏକଦା ଗଡ଼ଜାତ ଅନ୍ତର୍ଗତ ଆଠଗଡ଼ରେ ଜନ୍ମ ଏକ ଅଭିଜାତ, କୁଳୀନ ବ୍ରାହ୍ମଣ ପରିବାରର ପରମ୍ପରାରେ ପରିପୋଷିତ ତାଙ୍କର ଅନ୍ତଃପୁରୁଷ ମୋଗଲବନ୍ଦୀର ପ୍ରାଣକେନ୍ଦ୍ର କଟକ ସହରରେ ପରିପୂର୍ଣ୍ଣତା ଲାଭ କରିଥିଲା ତାଙ୍କର ସାମାଜିକ ଓ ସାର୍ବଜନୀନ ବ୍ୟକ୍ତିତ୍ୱ । ଗୋଟିଏ ଗ୍ରାମ୍ୟ ରକ୍ଷଣଶୀଳ ସଂସ୍କୃତି, ଅନ୍ୟଟି ଆଧୁନିକ ପ୍ରଗତିଶୀଳ ପରିବେଶ; ଏହି ଦୁଇ ବିପରୀତମୁଖୀ ଚଳଣି ଓ ପ୍ରବାହର ସେ ରହିଛନ୍ତି ଏକ ସମନ୍ୱୟର ସେତୁ ଭଳି । ସରଳ ନିରାଡ଼ମ୍ବର ଦରଦୀ ହୃଦୟ ଓ ଗତିଶୀଳ ପ୍ରଜ୍ଞାମୟ ମସ୍ତିଷ୍କର ଅପୂର୍ବ ସଂଯୋଗ ଘଟିଛି ତାଙ୍କ ବ୍ୟକ୍ତିତ୍ୱରେ । ନିଜମାଟି, ପାଣି, ପବନ, ଆଲୁଅ, ଅନ୍ଧାରକୁ ସେ ଖାଲି ଭଲ ପାଇନାହାନ୍ତି ତାକୁ ଛାଡ଼ି ସେ ବିଦେଶ ମାଟି ମାଡ଼ି ନାହାନ୍ତି । ଅଥଚ ଏହି ସେ ବିଶ୍ୱଚ-କ୍ଷୁ ମଣିଷ ଯାହାଙ୍କ ଆଖି ଆଗରେ ମାନସ ପଟରେ ସାରା ପୃଥିବୀର ଘଟଣାସ୍ରୋତ ଜୀବନ୍ତ ଏବଂ ଠିକ୍ ସେହିପରି ନିଜର ଜନ୍ମମାଟି ଆଠଗଡ଼ର ପ୍ରତ୍ୟେକ ଘର, ପରିବାର, ଗଛଲତା ଆଉ କର୍ମଭୂମି କଟକ ସହରର ପ୍ରତିଟି ଗଳି, ସାହି, ବସ୍ତି, ନାଳ, ନର୍ଦ୍ଦମା, ବିଚିତ୍ର ମଣିଷର ମେଳା; ଐଶ୍ୱର୍ଯ୍ୟ ଓ ବିଚର୍ଯ୍ୟପୂର ବିପଣୀ ଏ ସମସ୍ତର ସମାବେଶରେ ବିଜଡ଼ିତ ଏକ ବିସ୍ତୃତ ଜୀବନ ପଞ୍ଜିକା ।

ରାଧାନାଥବାବୁଙ୍କ ପାଖରେ ବୟସ ହାର ମାନିଛି । ତାଙ୍କୁ ବୟସ୍କ, ବର୍ଷୀୟାନ କହିଲାବେଳେ

ସେ ଅପ୍ରତିଭ ହୋଇ ଉଠନ୍ତି, କାରଣ ସେ 'ବୁଢ଼ା' ଅସମର୍ଥ ଏପରି ଶୁଣିବାକୁ ଭଲପାନ୍ତି ନାହିଁ । କାହାରି ଦୟା ଅନୁକମ୍ପାରେ ସେ ବଞ୍ଚିବାକୁ ଚାହାନ୍ତି ନାହିଁ । ଏତେ ବଡ଼ 'ସମାଜ' ଅନୁଷ୍ଠାନ ଗଢ଼ି ତୋଳିବାରେ ତାଙ୍କର ଅକ୍ଲାନ୍ତ, ଅଗାଧ ନିଷ୍ଠା, ବିଶ୍ୱାସ, ଓ କର୍ମଶକ୍ତିର ପ୍ରମାଣ ପାହାଡ଼ ଭଳି ଛିଡ଼ା ହୋଇଛି । ଅନବରତ କାର୍ଯ୍ୟବ୍ୟସ୍ତ, ସମ୍ବାଦପତ୍ରର ସମ୍ପାଦକ ଭାବେ ସେ ଅନ୍ୟମାନଙ୍କ ଭଳି ବେତନ-ଭୋଗୀ, ପ୍ରିଭିଲେଜ୍ଡ କ୍ଲାସର ଲୋକ ଭାବରେ ନୁହେଁ, ଜଣେ ଆମୂଳଚୂଳ ପ୍ରେସଲାଇନ ମାଷ୍ଟରମାଇଣ୍ଡ ଭଳି ସେ ସମାଜର ସମ୍ପାଦକ । ଖାଲି ଓଡ଼ିଶା ନୁହେଁ, ସାରା ଭାରତ ଏପରିକି ପୃଥିବୀର ଯେ କୌଣସି ସ୍ଥାନରେ ରହିଥିବା ଓଡ଼ିଆ ଭାଷୀଙ୍କ ପାଖରେ ରାଧାନାଥ ରଥ କହିଲେ 'ସମାଜ', ଆଉ 'ସମାଜ' କହିଲେ ରାଧାନାଥ ରଥ । ତା ସତ୍ତ୍ୱେ ତାଙ୍କ ଭିତରେ 'ପ୍ରସିଦ୍ଧି'ର ଲେଶମାତ୍ର ସ୍ପର୍ଶ ନ ଥିଲା । ଶାସନ, ପ୍ରଶାସନ, ବିଚାର, ଶିକ୍ଷା, ଚିକିତ୍ସା, ଇଂଜିନିୟରିଂ, କୃଷି, ସାହିତ୍ୟ, ସଂସ୍କୃତି, ଧର୍ମ, ଶିଳ୍ପ ଇତ୍ୟାଦି ଯେତେ ଯେତେ ବିଭାଗ ରହିଛି, ସବୁ ବିଭାଗର ସର୍ବନିମ୍ନଠାରୁ ସର୍ବୋଚ୍ଚ ବ୍ୟକ୍ତି ଓ ଶକ୍ତି ତାଙ୍କ ପାଖକୁ ଆସନ୍ତି ଏବଂ ସମସ୍ତେ ତାଙ୍କଠାରେ ସେଇ ଗୋଟିଏ ଅନ୍ତର୍ମଗ୍ନ ବ୍ୟକ୍ତିତ୍ୱର ଶୁଦ୍ଧ ପୂତ ମହିମାର ବଳୟରେଖା ଦେଖିବାକୁ ପାଇଛନ୍ତି । ତାଙ୍କର କ୍ରୋଧ ଅନାଚାର ବିରୁଦ୍ଧରେ ଅତ୍ୟନ୍ତ ଶାଣିତ ହେଲେ ହେଁ ଶୁଭଙ୍କର ହୁଏ—ତା'ରି ଭିତରେ ତାଙ୍କର ନିହିତ ବ୍ୟକ୍ତିତ୍ୱର ଆଶିଷ ଧାରା ସତେ ଯେପରି ଅନାଚାରକୁ ସଦାଚାରରେ ରୂପାନ୍ତରିତ କରିଦିଏ ।

ଡକ୍ଟର ରାଧାନାଥବାବୁ କୌଣସି ଉପାଧି ଉପଢୌକନରେ ବଶୀଭୂତ ହେଲାଭଳି ଜଣା ପଡ଼ନ୍ତି ନାହିଁ, ବରଂ ସେ ଚାହାନ୍ତି ଗୋଟିଏ ନିର୍ମଳ ଚରିତ୍ରବତ୍ତା, ସାଧୁତା, ସରଳତା ଏବଂ ସର୍ବୋପରି ସ୍ପଷ୍ଟବାଦିତା, ସତ୍ୟବାଦିତାର ପରିଚୟ-ପ୍ରମାଣ । ସେ ଦୋଷକୁ ଶୋଧନ କରିବାରେ ଆଗ୍ରହୀ, ଘୃଣା କରି ଆଡ଼େଇ ଦେବା, ଘୋଡ଼ାଇ ରଖିବା ବା ପୋଷି ରଖିବାକୁ ସେ ଆଦୌ ଚାହାନ୍ତି ନାହିଁ । ଏପରିକି ତାଙ୍କର ପୁଅ, ଝିଅ, ଭାଇ, ବନ୍ଧୁ ଆତ୍ମୀୟସ୍ୱଜନ କାହାରିକୁ ସେ ସେଥିପାଇଁ ପ୍ରଶ୍ରୟ ଦିଅନ୍ତି ନାହିଁ । ସେ ମନ୍ତ୍ରୀ ହୋଇଛନ୍ତି କିନ୍ତୁ ମନ୍ତ୍ରୀତ୍ୱକୁ ଜାବୋଡ଼ି ଧରିବା ପାଇଁ କେବେ ବି ଚେଷ୍ଟା କରିନାହାନ୍ତି । ସାଧାରଣ ଜୀବନରେ ସେ ଜଣେ ଅଜାତଶତ୍ରୁ ଓ ନମସ୍ୟ ବ୍ୟକ୍ତି ଭାବରେ ବିଦ୍ୟମାନ । ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରି ମଧ୍ୟ ସେ ଅଜେୟ ହୋଇ ଆସିଛନ୍ତି । ପ୍ରତିପକ୍ଷ ପ୍ରତି ତାଙ୍କର ସ୍ୱପକ୍ଷଠାରୁ ସମଧିକ ଶ୍ରଦ୍ଧା ସ୍ନେହ ଅତୁଟ ରହିଛି ।

ଡକ୍ଟର ରଥଙ୍କୁ କେଉଁ ଦିଗରୁ ଆଲୋଚନା କଲେ, କରିପାରିଲେ ମନଟା ତୃପ୍ତ ହେବ, ସେ କଥା ମୁଁ ପ୍ରତିବର୍ଷ ଜୟନ୍ତୀ ଉପଲକ୍ଷେ ଭାବେ, ଅଥଚ ରାହା ପାଏ ନାହିଁ । ତାଙ୍କର ଆରମ୍ଭ ଆଉ ଶେଷ ଯେମିତି ନାହିଁ । ସେ ଗୋଟିଏ ଚିରସ୍ରୋତା ଜୀବନଧାରା; ଖାଲି ସତ୍ୟ, ଅନୁଭବ ଆଉ ଅକଳନ୍ତି ସମ୍ପର୍କର ସେ ଗୋଟିଏ ନିତ୍ୟନୂତନ ସଂସ୍କରଣ ।

କିଛି ବର୍ଷ ତଳେ ମୁଁ ରାଧାନାଥବାବୁଙ୍କୁ ତାଙ୍କର ଆତ୍ମଜୀବନୀଟିଏ ଲେଖିବା ପାଇଁ ଅନୁରୋଧ କରି-ଥିଲି । କିନ୍ତୁ ସେଥିରେ ସେ ଅରାଜି ହେଲେ । ତା'ର କାରଣ ଦର୍ଶାଇବାକୁ ଯାଇ ସେ କହିଲେ ଯେ "ଯଦି ମୁଁ ମୋ ଜୀବନ ଲେଖେ ତେବେ ଓଡ଼ିଶାର ବହୁ ଘଟଣା ସଂପୃକ୍ତ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସଂପର୍କରେ ଅନେକ ସତ୍ୟ କଥା ଲେଖିବାକୁ ବାଧ୍ୟ ହେବି, ତା' ନ ହେଲେ ମୁଁ ବିବେକତଃ ନିଜକୁ ଦୋଷୀ ମନେ କରିବି, ବରଂ ନ ଲେଖିଲେ ଭଲ । ଅର୍ଥାତ୍ ସେହି ସେହି ବ୍ୟକ୍ତିମାନଙ୍କର ଦୋଷ, ତ୍ରୁଟି ବା ନେଗେଟିଭ ସାଇଡ୍ ବିଷୟରେ ଲେଖିଲେ ନିଶ୍ଚୟ ସେମାନଙ୍କର ଥିବା ଭାବମୂର୍ତ୍ତି କ୍ଷୁଣ୍ଣ ହେବ, ଅଥଚ ଅନ୍ୟ ଭାବରେ

ଓଡ଼ିଶାର ଭାଗ୍ୟ ନିର୍ମାଣରେ ସେମାନଙ୍କର ଅବଦାନ ଉଚ୍ଚକୋଟିର ଏବଂ ସ୍ମରଣୀୟ ହୋଇ ରହିଛି; ସେଥିନେଇ ଆତ୍ମଜୀବନୀ ଲେଖିବାକୁ ମୁଁ ଉଚିତ ମନେ କରୁନାହିଁ ।" ଏଥିରୁ ମୁଁ ଅନୁମାନ କରୁଛି ରାଧାନାଥବାବୁଙ୍କ ଉଦାରତାର କଥା । କାହାରି ଅବମୂଲ୍ୟାୟନ କରିବାକୁ ସେ ଚାହାନ୍ତି ନାହିଁ । ଦୋଷ, ତ୍ରୁଟି ମଣିଷ ମାତ୍ରେଇ ରହିବ, କିନ୍ତୁ ସେସବୁ ସଂଶୋଧନସାପେକ୍ଷ । ଗୁଣଗାରିମା ଅନୁକରଣୀୟ ଏବଂ ଆଲୋଚ୍ୟ ।

ମୁଁ ଦୂରରୁ ରାଧାନାଥବାବୁଙ୍କୁ ଅନେକ ଦିନ ଆଗରୁ ଲକ୍ଷ୍ୟ କରି ଏକ ଅନତିକ୍ରମ୍ୟ, ଅପରିହାର୍ଯ୍ୟ ଆଦର୍ଶ ଭାବେ ଗ୍ରହଣ କରିଥିଲି ଏବଂ ସେ ଯେ ଆମ ବୟସର, ଆମ ରୁଚିର ବହୁତ ଦୂରରେ ଏକ ସମ୍ମାନାସ୍ପଦ ସ୍ଥାନ ଅଧିକାର କରି ରହିଛନ୍ତି, ସେ ବିଷୟରେ ମୁଁ ଅତି ସମ୍ଭ୍ରମର ସହିତ ସଚେତନ ରହିଛି କିନ୍ତୁ ଥରେ ତାଙ୍କର ଅନ୍ତରଙ୍ଗ ସାନ୍ନିଧ୍ୟ ଓ ଆଳାପ ଆଲୋଚନାର ସୁଯୋଗ ଲାଭ କରି ମୁଁ ଆବିଷ୍କାର କରିଥିଲି ରାଧାନାଥବାବୁଙ୍କର ମୁଗ୍ଧ ମଧୁର ନିର୍ଦ୍ଦୋଷ ରସିକତାକୁ । ପ୍ରାୟ ପାଞ୍ଚ ବର୍ଷ ତଳେ ଶ୍ୟାମ ମହାପାତ୍ରଙ୍କ ପୁଅ ବିବାହ ଉପଲକ୍ଷେ ବାଲେଶ୍ୱର ଯାଇଥିଲେ ସେ; ମୁଁ ମଧ୍ୟ ଯାଇଥିଲି । କଟକ ଫେରୁ ଫେରୁ ବହୁତ ରାତି ହୋଇଗଲା । ସେ ଗାଡ଼ିରେ ବସିଥାନ୍ତି । ମୁଁ ଭାବୁଥାଏ ସେ ତନ୍ଦ୍ରାଚ୍ଛନ୍ନ ଅବସ୍ଥାରେ । ବୋଧହୁଏ ଶାନ୍ତିରେ ଏତେ ଦୀର୍ଘ ପଥ ବିଳମ୍ବିତ ରାତିଯାତ୍ରା କରିବାକୁ ଚାହୁଁଥିବେ । କିନ୍ତୁ ସେ ମୋତେ ଓଲଟା ସତେଜ କରିବା ଲାଗି ଇଙ୍ଗିତ ଦେଇ କିଛି ଲଘୁଗଳ୍ପ କରିବା ପାଇଁ ଇଚ୍ଛା କଲେ । ସେଥିରେ ମୁଁ ସପ୍ରତିଭ ଆଗ୍ରହ ଦେଖାଇବା ସ୍ୱାଭାବିକ । ଗାଡ଼ି ଚାଲିଥାଏ, ଭଦ୍ରକ ପାଖରେ ହେଲାବେଳକୁ ସେ ମୋତେ କହିଲେ "ଅନନ୍ଦାବାବୁ ଜାଣିଚକି, ଏ ଭଦ୍ରକର ଗୋଟିଏ ଇତିହାସ ଅଛି ? ପ୍ରସିଦ୍ଧ ଔପନ୍ୟାସିକ ବଙ୍ଗଳାର ବଙ୍କିମ ଚାଟର୍ଜୀ ସେତେବେଳେ ଭଦ୍ରକର ଏସ୍.ଡି.ଓ ଥାନ୍ତି । ବ୍ରିଟିଶ ଅମଳର କଥା । ଏସ୍.ଡି.ଓ.ଙ୍କ କ୍ଷମତା ଓ ଗୁରୁତ୍ୱ ସେ ସମୟରେ ଯାହା ଥିବ ଅନୁମାନ କରିପାରୁଥିବ । ବଙ୍କିମବାବୁ କଲିକତା ଅଭିମୁଖେ ଯାତ୍ରା କରିବାପାଇଁ ଟ୍ରେନ୍‌ର ଫାଷ୍ଟ କ୍ଲାସ କମ୍ପାର୍ଟମେଣ୍ଟରେ ସସ୍ତ୍ରୀକ ଉଠିଥିଲେ । ଟ୍ରେନ ଛାଡ଼ିବା ପୂର୍ବରୁ କଣ ଗୋଟିଏ ଆଣିବା ପାଇଁ ବଙ୍କିମବାବୁ ସ୍ତ୍ରୀଙ୍କୁ ଛାଡ଼ି ବାହାରକୁ ଯାଇଥିଲେ । ଏ ସମୟରେ ଟି.ଟି.ସି. ଆସି ଫାଷ୍ଟକ୍ଲାସ କମ୍ପାର୍ଟମେଣ୍ଟରେ ଜଣେ ଅପୂର୍ବ ସୁନ୍ଦରୀ ସମ୍ଭ୍ରାନ୍ତ ଭଦ୍ର ମହିଳା ଏକୁଟିଆ ବସିଥିବାର ଦେଖି ତାଙ୍କୁ ଟିକେଟ୍ ମାଗିବା ଛଳନାରେ ଆସି ଆଳାପ କରିବାକୁ ଚାହିଁଲେ । ବଙ୍କିମବାବୁଙ୍କ ସ୍ତ୍ରୀ ଟି.ଟି.ସିଙ୍କୁ କହିଲେ ତାଙ୍କ ସ୍ୱାମୀଙ୍କ ପାଖରେ ଟିକେଟ୍ ଅଛି । ସେ ବାହାରକୁ ଯାଇଛନ୍ତି । କିନ୍ତୁ ଟି.ଟି.ସି. ସେତିକରେ ସନ୍ତୁଷ୍ଟ ନ ହୋଇ ଟିକିଏ ଆଳାପ ଜମାଇବା ପାଇଁ ଇଚ୍ଛାକରି ଭଦ୍ରମହିଳାଙ୍କୁ ପାନ ଖାଇବା ପାଇଁ ସାଦର ଆବେଦନ ଜଣାଇଲେ । ଏଥିରେ ଭଦ୍ରମହିଳା ମନେ ମନେ କ୍ଷୁଣ୍ଣ ହୋଇ ଭଦ୍ରତା ଖାତିରରେ ଟି.ଟି.ସିଙ୍କୁ କହିଲେ "ଆମାର ସ୍ୱାମୀ ଏଖାନକାର ଏସ୍.ଡି.ଓ., ଆଠଶ' ଟାକା ମାଇନା ପାୟ, ତବୁଓ ସେ ଆମାର ମନ ପେଯେନି, ଆପନି ସୁଧ୍‌କ ଏ କଟା ପାନ ଦିଯେ ଆମାର ମନ ପେଯେ ଯାବେନ "? —ଟି.ଟି.ସି ବଙ୍କିମବାବୁଙ୍କ ସ୍ତ୍ରୀଙ୍କର ଏ ପରିଚୟ ଶୁଣିଲା ପରେ ଏକମୁହାଁ କୁଆଡ଼େ ଯେ ଗଲେ, ତାର ପତ୍ତା ମିଳିଲା ନାହିଁ । ଟ୍ରେନ୍ ପ୍ଲାଟଫର୍ମ ଛାଡ଼ିଲା । —

× × ଏଇ ବର୍ଣ୍ଣନା, ବିଷୟ ପ୍ରସଙ୍ଗ ରାଧାନାଥବାବୁ ଯେ ଦେବେ ସେ କଳ୍ପନା ମୁଁ କେବେ କରି ପାରି ନଥିଲି । ତାଙ୍କର ଭିତରେ ଯେ ଗୋଟିଏ ସରସ, ସୁନ୍ଦର, ସାଧାରଣ ମଣିଷର ସ୍ୱାଦ ରହିଛି ଏବଂ ସେ ଯେ ଜଣେ କେବଳ ନୀରସ, ଶୁଷ୍କ, ନୀତିବାଗୀଶ ଟାଣୁଆ ଏବଂ ନିଜକୁ ଖୁବ୍ ଓଜନଦାର, ଅସାଧାରଣ ଜାହିର

କରିବା ବ୍ୟକ୍ତି ନୁହନ୍ତି, ତାଙ୍କର ଭିତରେ ଗୋଟିଏ ସରଳ, ଶାନ୍ତ, କାନ୍ତ, ଚଞ୍ଚଳ, ସ୍ବପ୍ନିଳ ମଣିଷଟିଏ, ରସିକତାର ସ୍ରୋତଟିଏ ଲୁଚିରହିଛି, ବନ୍ଦୀରହିଛି, କୁତୁକୁତୁ ହୋଇ ବହି ଚାଲିଛି, ସେକଥା ଅନୁଭବ କରି ମୁଁ ଅଭିଭୂତ ହୋଇଗଲି । ରାଧାନାଥବାବୁଙ୍କ ଆଖିରେ, ମୁହଁରେ ସବୁବେଳେ ଅଗଣିତ ଦୁଃଖୀ ଦରିଦ୍ର, ରୋଗିକଳ, ଲଙ୍ଗଳା, ହାହାକାରମୟ ମଣିଷର ଜୀବନଯାତ୍ରାର ଚିତ୍ର ଭାସି ଉଠେ । ବନ୍ୟା, ବାତ୍ୟା, ମରୁଡ଼ି, ଦୁର୍ଘଟଣା, ମୃତ୍ୟୁ, ଅପମୃତ୍ୟୁର ରାଶିରାଶି ଆଲେଖ୍ୟରେ ସେ ଜୁଡ଼ୁବୁଡ଼ୁ ଗୋଟାଏ ବିରାଟ ଆନୁଷ୍ଠାନିକ ବ୍ୟକ୍ତି ସତ, କିନ୍ତୁ ତାଙ୍କର ଭିତରେ ଗୋଟିଏ ରସଚର୍ଚ୍ଚିତ ସ୍ନିଗ୍ଧ ମଧୁର ସ୍ବର ଶୁଣି ମୁଁ ବିସ୍ମିତ ହେଲି । ତାଙ୍କ ପ୍ରତି ମୋର ଆକର୍ଷଣ ବହିର୍ମୁଖୀ ନ ହୋଇ ଅନ୍ତର୍ମୁଖୀତ୍ୱରେ ଆହୁରି ତୀବ୍ର ହୋଇଉଠିଲା ।

ରାଧାନାଥବାବୁ ବସ୍ତୁତଃ ଜଣେ ପରିପୂର୍ଣ୍ଣ ମଣିଷ । ମଣିଷ କହିଲେ ଆମେ ଯାହା ବୁଝୁ, ତାଠାରୁ ଆହୁରି ଅଧିକ କିଛି ତାଙ୍କଠାରେ ଲକ୍ଷ୍ୟ କରାଯାଏ । ସେ ସୁଦୀର୍ଘ କର୍ମ-ମୁଖର ଜୀବନଯାତ୍ରା ପଥରେ ଅଗଣିତ ମଣିଷ ସଂସ୍ପର୍ଶରେ ଆସିଛନ୍ତି ଏବଂ ଅଗଣିତ ଘଟଣାଚକ୍ରରେ ସଂପୃକ୍ତ ହୋଇ ପଡ଼ିଛନ୍ତି, ତା ସତ୍ତ୍ୱେ ସେ ଯେମିତି ନିଜେ ନିଜ ଭିତରେ ଗୋଟିଏ ପୂର୍ଣ୍ଣ ଓ ନିରାସକ୍ତ ସାକ୍ଷୀ ପୁରୁଷଟିଏ ହୋଇ ରହିଛନ୍ତି, ଏହା ତାଙ୍କର ଭାବମୟ ଅସ୍ତିତ୍ୱ । ସେ କିଛି କବିତା ଲେଖିଛନ୍ତି । କବିତ୍ୱର ଏକ ନିଗୂଢ଼ ଉତ୍ସ ତାଙ୍କ ଭିତରେ ଯେମିତି ସବୁବେଳ ପାଇଁ ଆତ୍ମପ୍ରକାଶ ଉନ୍ମୁଖ ହୋଇ ରହିଛି । ହଜାର ହଜାର ଗଦ୍ୟମୟ ଲେଖା, ସମ୍ବାଦ, ସମୀକ୍ଷା, ଚିନ୍ତା, ଚର୍ଚ୍ଚା ଇତ୍ୟାଦି ଭିତରେ ସେଇ କବିତ୍ୱର ସର୍ବଦର୍ଶୀ, ସମଦର୍ଶୀ, ସତ୍ୟଦର୍ଶୀ ନିରୀକ୍ଷଣ ହିଁ ତାଙ୍କର ବିଶେଷତ୍ୱ । ତାଙ୍କର ସାହିତ୍ୟିକ ମୂଲ୍ୟାୟନ କରିବା ପାଇଁ ମୋର ସାହସ କୁଳାଏ ନାହିଁ । ସମ୍ବାଦପତ୍ରର ଭାଷା ଓ ଆତ୍ମାକୁ ସେ ସାହିତ୍ୟର ମର୍ଯ୍ୟାଦା ଦେବାରେ ସମର୍ଥ ହୋଇ ପାରିଛନ୍ତି । ଓଡ଼ିଶା କହିଲେ ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ଓ ପରଂପରାରେ ପରିପୁଷ୍ଟ ଗୋଟିଏ ଦିଗନ୍ତ-ବିସ୍ତୃତ ଚେତନାକୁ ବୁଝାଏ । ସେହି ମର୍ମରେ ସେ ଓଡ଼ିଶାର ବରପୁତ୍ରମାନଙ୍କ ମଧ୍ୟରେ ଆସୀନ ସତ୍ୟ, କିନ୍ତୁ 'ଓଡ଼ିଆ' ଯେପର୍ଯ୍ୟନ୍ତ ବିଶ୍ୱଜୀବନ କ୍ଷେତ୍ରରେ ତିଷ୍ଠିରହିଥିବ, ସେ ପର୍ଯ୍ୟନ୍ତ ରାଧାନାଥ ରଥ ଓଡ଼ିଆର ଓ ଓଡ଼ିଶାର ଜଣେ ଗୌରବ ବିପ୍ଳବୀ ଭଳି ଆମ ଭିତରେ ପ୍ରେରଣା ଓ ପ୍ରବର୍ତ୍ତନାର ଇନ୍ଧନ ହୋଇ ରହିଥିବେ ।

ସେ ଆଠଗଡ଼ର ଗାଁପୁଅ ହେଲେ ବି କଟକର ପାଳିତ ପୁଅ ଭଳି କଟକ ସହରର ମମତାରେ ଛନ୍ଦାବନ୍ଧା ହୋଇ ବକ୍ସିବଜାରର ସେଇ 'ଗୋପବନ୍ଧୁ ଭବନ'ର ଆଦିପୁରୁଷ ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ ଉତ୍ତର ପୁରୁଷର ଜ୍ୱଳନ୍ତ ପ୍ରତିମା ହୋଇ ଉଭା ହୋଇଛନ୍ତି । ଆମେ ଉତ୍କଳମଣିଙ୍କୁ ଦେଖିନାହୁଁ କିନ୍ତୁ ଦେଖୁଛୁ ରାଧାନାଥବାବୁଙ୍କୁ, ସେହି ଯୁଗର ଅନାବିଳ ସେବା, ତ୍ୟାଗ, ତିତିକ୍ଷା ଆଉ ମାନବତାର ମହାନ୍ ଜ୍ୟୋତିରେ ସଂଦୀପିତ ଏକ ଶାନ୍ତ, କାନ୍ତ, ସମାହିତ ବିଗ୍ରହଙ୍କୁ ଯାହାଙ୍କୁ ଅଭିନନ୍ଦିତ କରି ଆମେ ଆନନ୍ଦିତ ହେବାର ବହୁଧା ସୁଯୋଗ ଅପେକ୍ଷାରେ ରହିଛୁ । ଏ ଶତାବ୍ଦୀର ଜନ୍ମ ଆଗରୁ ସେ ଅଛନ୍ତି ଆଉ ଶତାବ୍ଦୀ ଶେଷ ହେବା ପୂର୍ବରୁ ସେ ଛାଡ଼ିଯିବେ ନାହିଁ । ଓଡ଼ିଶା ପାଇଁ, ଓଡ଼ିଆଙ୍କ ପାଇଁ ଏ ଶତାବ୍ଦୀର ପ୍ରତିଟି ମୁହୂର୍ତ୍ତ ପାଇଁ ରାଧାନାଥବାବୁ ଯେମିତି ନିତ୍ୟ ପ୍ରବୃତ୍ତ ବର୍ତ୍ତମାନ । ସେ ଚିର ଜାଗ୍ରତ, ସକ୍ରିୟ, ସୁସ୍ଥ ହୋଇ ରହନ୍ତୁ, ତାଙ୍କର ପବିତ୍ର ଜନ୍ମତିଥିରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଛୁ ।

ମୁଖପାତ୍ର, ପି.ସି.ପି, କ୍ୱାର୍ଟର ନମ୍ବର-୨, ଏସ୍.ସି.ବି. ମେଡିକାଲ କଲେଜ, କଟକ





# ବାବୁଜୀ ହେ ଆଜି କ୍ରୁଦ୍ଧ



## ପରମାନନ୍ଦ ଅଧିକାରୀ

ବାବୁଜୀ ହେ ଆଜି କ୍ରୁଦ୍ଧ
ସେହିଠାରେ ମୁହିଁ କି ଲେଖା ଲେଖିବ ?
ଯହିଁ ଝରୁଅଛି,
ନିରତ ନୟନୁ ଲୁହ
ବାବୁଜୀ ହେ ଆଜି କ୍ରୁଦ୍ଧ······

ମୂର୍ଖକୁ ଯହିଁ ଦିନ ରାତି ଆହା !
ଜିବ ଯେ କରଇ ସ୍ତୁତି,
ନିଜ ନାମେ ପୁଣି ଆନ କୃତି ଭଣି
କରିଦିଏ ନିଜ କୃତି,
ପ୍ରତିଭା ପୂଜାର ନାମେ ଚାଲେ ଯହିଁ
ଲୁଣ୍ଠନ-ଅଭିନୟ
ସେହିଠାରେ ମୁହିଁ କି ଲେଖା ଲେଖିବ ?
ବାବୁଜୀ ହେ ଆଜି କ୍ରୁଦ୍ଧ······

ସଂସ୍କୃତି ନାମେ ଯହିଁ ଚାଲିଅଛି
ଅପସଂସ୍କୃତି ନାଟ
କୁଳ, ସ୍ୱାଭିମାନ, ଶାଳୀନତା ଭୁଲି
ଲେଖକ ସାଜଇ ଭାଟ,
ରାଜନୀତି ଯହିଁ ମଣିଷକୁ ପଶୁ
କରୁଅଛି ଅହରହ
ସେହିଠାରେ ମୁହିଁ କି ଲେଖା ଲେଖିବ ?
ବାବୁଜୀ ହେ ଆଜି କ୍ରୁଦ୍ଧ···

ଛଳନାର ଜାଲ ବୁଣି ବୁଣି ଯହିଁ
ହିତ ଶତ୍ରୁ ଯେ ମାତେ
ହୀନ ସ୍ୱାର୍ଥର ଲାଗି ଯହିଁ ଭାଇ-
ଭାଇର ବି ଗଳା କାଟେ,
ମଣିଷପଣିଆ ଯହିଁ ଲୁଚିଯାଏ
ପୁଣ୍ୟର ହୁଏ କ୍ଷୟ
ସେହିଠାରେ ମୁହିଁ କି ଲେଖା ଲେଖିବ ?
ବାବୁଜୀ ହେ ଆଜି କ୍ରୁଦ୍ଧ···

ପ୍ରତି ନିମିଷରେ ଆଣବିକ ଭୟ
ଯହିଁ କରେ ବିଚଳିତ—
ସୁନ୍ଦର ଧରା, ମାନବେ ଇଦମ୍
କରେ ପୁଣି କବଳିତ
ଯୌବନ ଯହିଁ ପଣ୍ୟ ହୋଇଛି
ଦାନବର ଶୁଭେ ଜୟ
ସେହିଠାରେ ମୁହିଁ କି ଲେଖା ଲେଖିବ ?
ବାବୁଜୀ ହେ ଆଜି କ୍ରୁଦ୍ଧ···

ଧର୍ମର ଯହିଁ ବିଳୟ ଘଟଇ
ଅଧର୍ମ ଭାବ ବଢ଼େ
ହୀନ, ଦରିଦ୍ର ଭୋକ-ଉପାସରେ
ମାଛି ପୋକ ପରି ଝଡ଼େ
କଥା କାର୍ଯ୍ୟର ମେଳନାହିଁ, ଚାଲେ
ଅମାନ୍ତର ଅଭିନୟ
ସେହିଠାରେ ମୁହିଁ କି ଲେଖା ଲେଖିବ ?
ବାବୁଜୀ ହେ ଆଜି କ୍ରୁଦ୍ଧ···

ମାନବିକତାର ମୂଲ୍ୟବୋଧ ଯେ
ସଦା ହୁଏ ଯହିଁ ହ୍ରାସ
ବେଦନାର ଝଡ଼-ଝଙ୍କାର ପୁଣି
ଭରିଦିଏ ଘର-ପ୍ରାସ
ଶାନ୍ତି, ମୈତ୍ରୀ, ପ୍ରୀତି ନିରତ
ରଖେ ବଳୟରେ ଲୟ
ସେହିଠାରେ ମୁହିଁ କି ଲେଖା ଲେଖିବି ?
ବାବୁଜୀ ହେ ଆଜ କୁହ...

ଗାନ୍ଧୀର ନାମ ବିକାହୁଏ ଯହିଁ
ହୀନ ସ୍ୱାର୍ଥର ପାଇଁ
ମହାପାପ ଯେ ମାରି ନିଏ ସଦା
ଜନକା ରହଇ ଶୁହିଁ,
ତ୍ୟାଗ କଲେ ଦଳେ, ଭୋଗ କଲେ ଦଳେ
ବଢ଼େ ଅବିଶ୍ୱାସ ଭୟ
ସେହିଠାରେ ମୁହିଁ କି ଲେଖା ଲେଖିବି ?
ବାବୁଜୀ ହେ ଆଜ କୁହ...

କି ଥିଲା ଏ ଦେଶ କି ହୋଇଛି ଆଜ
କହିବାକୁ ମାଡ଼େ ଲାଜ
ଅନ୍ଧୃତ କଳେବରେ ପାଏ ଶୋଭା
ନବ ସଭ୍ୟତା ସାଜ
ନିଖିଳ ଜୀବନ ଶଙ୍କିତ ଯହିଁ
ଶୁଣି ପ୍ରଳୟର ଜୟ
ସେହିଠାରେ ମୁହିଁ କି ଲେଖା ଲେଖିବି ?
ବାବୁଜୀ ହେ ଆଜ କୁହ...

ତୁମ ପରି ଜଣେ ମଣିଷ-ଦେବତା
ଆଖିରେ ତ ପଡ଼ୁନାହିଁ
ଜୀବନକୁ କିଏ ଉତ୍ସରଗି ଦେବ
ଦୀନ, ଦୁଃଖୀର ପାଇଁ
ବଢ଼ି, ମରୁଡ଼ିରେ ଝଡ଼-ବର୍ଷାରେ
କିଏ ସେ ଝାରିବ ଲୁହ ?
ସେହିଠାରେ ମୁହିଁ କି ଲେଖା ଲେଖିବି ?
ବାବୁଜୀ ହେ ଆଜ କୁହ...

କିଏ ସେ ପରକୁ ଆପଣାର ଭାବି
ଭାଷିବ ମଧୁର-ଗିର
ଜାତି, ଜାତୀୟତା ପାଇଁ କେ ଲଢ଼ିବ
ନୁଆଁଇବ ନାହିଁ ଶିର
ଦୁର୍ନୀତି ବୁକେ କଲମ ମାରି କେ
ଗାଇବ ଧର୍ମ-ଜୟ ?
କୃତି-କୀର୍ତ୍ତିରେ ଅମର ହୋଇଛ
ଜନଗଣ ଗାଏ ଜୟ... ।

ସମ୍ପାଦକ, ଓଡ଼ିଶା ପୂଜ୍ୟପୂଜା ଏକାଡେମୀ, କଳା ଶ୍ରୀକୁଟୀର, ଯୋବ୍ରା, କଟକ



# ପରିବେଶ
# ଓ
# ରାଧାନାଥ ରଥ

## ରାଜକିଶୋର ରାମ

ପରିବେଶ ପ୍ରଦୂଷଣ ମୁକ୍ତକରିବା ପାଇଁ ନେତାଙ୍କଠାରୁ ଆରମ୍ଭ କରି ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତେ ଉଦ୍‌ବିଗ୍ନ । ବହୁତ ପ୍ରସ୍ତାବ ହେଉଛି । କେତେ କାର୍ଯ୍ୟକାରୀ ହେଉଛି । କେତେକ କେବଳ ପ୍ରସ୍ତାବରେ ରହିଯାଉଛି । ପରିବେଶର ସୁରକ୍ଷା ପାଇଁ ସବୁଦିନମ୍‌ ଆବଶ୍ୟକତା ଉପରେ ଗୁରୁତ୍ୱ ଦିଆଯାଉ-ନାହିଁ, ତାହାହେଲେ ଜଙ୍ଗଲସମ୍ପଦ ନଷ୍ଟ ନ କରିବା, ଅଧିକରୁ ଅଧିକ ବୃକ୍ଷ ରୋପଣ କରିବା । ହଜାର ହଜାର ସଂଖ୍ୟାରେ ବିଭିନ୍ନ ପ୍ରକାର ଗଛ ଜନସାଧାରଣଙ୍କୁ ତଥା ବିଭିନ୍ନ ଅନୁଷ୍ଠାନକୁ ବଣ୍ଟନ କରାଯାଉଛି । ଗଛଗୁଡ଼ିକ ଯଥା ସ୍ଥାନରେ ଯଥା ସମୟରେ ରୋପଣ କରାଗଲା କି ନାହିଁ, ସେଗୁଡ଼ିକର ରକ୍ଷଣାବେକ୍ଷଣ ବ୍ୟବସ୍ଥା ହେଲା କି ନାହିଁ ତାହା କାଗଜପତ୍ରରେ ଅବା ହେଉଥିବ, ମାତ୍ର ସାଧାରଣ କ୍ଷେତ୍ରରେ ତହିଁର ତଦାରଖ ହେଉନାହିଁ ।

୧୯୮୬ ମସିହା ହେବ । ସମାଜ ସମ୍ପାଦକ ଡକ୍ଟର ରାଧାନାଥ ରଥ ଆସିଥାଆନ୍ତି ଖୋରଧା ପ୍ରାଣନାଥ ମହାବିଦ୍ୟାଳୟର ଏନ୍‌. ସି. ସି. ବିଭାଗର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଆୟୋଜିତ ବିଭିନ୍ନ ପ୍ରତିଯୋଗିତା ଉତ୍ସବରେ ପୌରୋହିତ୍ୟ କରିବାକୁ । ସେତେବେଳକୁ ଡକ୍ଟର ରଥ ନବେବର୍ଷରେ ପଦାର୍ପଣ କରିଥାଆନ୍ତି । ହାଫ୍‌ପ୍ୟାଣ୍ଟ ହାଫ୍‌ସାର୍ଟ ପିନ୍ଧି ଏନ୍‌. ସି. ସି. ପୋଷାକ ପରି ଜୋତା, ମୋଜା, ବେକରେ ରୁମାଲ ବାନ୍ଧି କଲେଜଠାରେ ପହଞ୍ଚିବା-ମାତ୍ରେ ଏନ୍‌. ସି. ସି. ଅଫିସରମାନେ ତାଙ୍କୁ ସ୍ୱାଗତ ଜଣାଇଥିଲେ । ଡଃ ରଥଙ୍କୁ ଏକ ଖୋଲା ଘୋଡ଼ା ଗାଡ଼ିରେ ସଭାସ୍ଥଳକୁ ନିଆଗଲା । ଆଗେ ଆଗେ ଅଶ୍ୱାରୋହୀ ଛାତ୍ରମାନେ ଦୁଇଧାଡ଼ିରେ ଚାଲିଥାଆନ୍ତି । ଅଦ୍ଭୁତ ସେ ଦୃଶ୍ୟ । ହଜାର ହଜାର ଦର୍ଶକ ସମ୍ବର୍ଦ୍ଧନାକୁ ଉପଭୋଗ କରୁଥାଆନ୍ତି ।

ଅପରାହ୍ଣ ତିନିଟା ସମୟରେ ଉକ୍ତ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଯେ କୌଣସି ସଂସ୍ଥାରେ ଯଥା ସମୟରେ ଯୋଗଦେବା ଡକ୍ଟର ରଥଙ୍କ ଜୀବନର ଏକ ଅବିଚ୍ଛେଦ୍ୟ ଅଂଶ । ସେଦିନ ଡଃ ରଥ ଦିନ ଘ ୨ । ୩୦ ମିନିଟ୍‌ରେ ଖୋରଧାରେ ପହଞ୍ଚିଲେ । ଆହୁରି ଅଧଘଣ୍ଟାଏ ସମୟ ଅଛି । ଆମ ଘର ପାଖରେ ଗାଡ଼ି ରଖି ଡ୍ରାଇଭରଦ୍ୱାରା ମୋତେ ଡକାଇଲେ । ପୋଗ୍ରାମ ତ ମୁଁ ଜାଣିଥିଲି । ଏଣୁ ପ୍ରସ୍ତୁତ ହୋଇଥିଲି । ସଙ୍ଗେ ସଙ୍ଗେ ଆସି ଗାଡ଼ିରେ ବସିଲି । ଅଧଘଣ୍ଟା ସମୟ କିପରି କେଉଁଠାରେ କଟିବ, ସେ ବିଷୟ ମୁଁ ଚିନ୍ତା କରୁଥାଏ । କ୍ଷିଣେ ଖରା ମଧ୍ୟ ହୋଇଥାଏ । ଡଃ ରଥ କହିଲେ ଚାଲନ୍ତୁ ବରୁଣାଇ ବୁଲିଆସିବା । ସମୟ କଟିଯିବ । ମନ କଥା ଜାଣିବା ପରି ସମୟ କଟିଯିବ ବୋଲି କହିବାରୁ ମୋ ମନରେ ଥିବା ପ୍ରଶ୍ନର ସମାଧାନ ହୋଇଗଲା । ଆମେ ବରୁଣାଇ ଅଭିମୁଖେ ଚାଲିଲୁ । ଖୋରଧାଠାରୁ ମାତ୍ର ୩ କିଲୋମିଟର ଦୂର ।

ବରୁଣାଈ ମନ୍ଦିରକୁ ଯାଇଥିବା ସୋପାନ ଶ୍ରେଣୀଠାରେ ଓହ୍ଲାଇ ସେ ସହରଆଡ଼କୁ ଚାହୁଁଥାଆନ୍ତି । ଭୀଷଣ ଖରା ଓ ଗରମ ସତ୍ତ୍ୱେ ସେଠାରେ ଗରମ କମ୍ ଜଣାପଡୁଥାଏ । ପାହାଚ ଆଡ଼କୁ ନ ଯାଇ ରାସ୍ତାରେ ରାସ୍ତାରେ ତଳକୁ ଆସି ରାସ୍ତାର ପଶ୍ଚିମପଟ ପଡ଼ିଆକୁ ଲକ୍ଷ୍ୟ କରୁଥାଆନ୍ତି । କହିଲେ ଦୁଇବର୍ଷ ତଳେ ଏଇ ଅଞ୍ଚଳରେ ଦୁଇହଜାର ଗଛ ଲଗାଯାଇଥିଲା । ସେ ନିଜେ ବୃକ୍ଷରୋପଣ ଉତ୍ସବରେ ଯୋଗଦେଇ ବୃକ୍ଷରୋପଣ କରିଥିଲେ ବୋଲି କହିଲେ । କାହିଁ ଗୋଟିଏ ବି ଗଛ ଦେଖାଯାଉନାହିଁ । ଜଙ୍ଗଲ ବିଭାଗ ପକ୍ଷରୁ ବହୁ ଟଙ୍କା ଖର୍ଚ୍ଚ ହୋଇ ଦୁଇହଜାର ଗାତ ଖୋଳାଗଲା । ବୃକ୍ଷରୋପଣ ଉତ୍ସବ ଅନୁଷ୍ଠିତ ହେଲା । କେତେଜଣ ପରିବେଶବିତ୍ ଭାଷଣ ଦେଇ ବୃକ୍ଷର ଉପକାରିତା ସମ୍ପର୍କରେ କହିଲେ । ଗଛ ବଞ୍ଚିଲେ ଦେଶ ବଞ୍ଚିବ ବୋଲି କହିଲେ । ମାତ୍ର କଅଣ ହେଲା, ଗୋଟିଏ ଗଛକୁ ବଞ୍ଚାଯାଇ ପାରିଲା ନାହିଁ । ପରିବେଶ ପ୍ରଦୂଷଣମୁକ୍ତ ହେବ କିପରି ? ରାସ୍ତାର ପୂର୍ବପଟକୁ ଚାହିଁଲେ । ନଣ୍ଡା ପାହାଡ଼ଟିଏ । କେତେକ ଲଟା ଗୁଳ୍ମ କଣ୍ଟା ଗଛ ବ୍ୟତୀତ ସେଠାରେ ବଡ଼ ଗଛଟିଏ ନାହିଁ । ବରୁଣାଈ ମନ୍ଦିର ନିକଟକୁ ଗଲୁ । ନବେ ବର୍ଷ ବୟସରେ ସେ ଟଗ ଟଗ ହୋଇ ପାହାଚ ଉପରେ ପାହାଚ ଚଢ଼ି ମନ୍ଦିର ପାଖରେ ପହଞ୍ଚିଗଲେ । ଆମେ ପଛରେ ପଡ଼ିଗଲୁ । ବରୁଣାଈ ନିକଟରେ ଟିକିଏ ଗରମ କମ୍ ଜଣାପଡ଼ିଲା । ସେଠାରେ ମଧ୍ୟ ସେଇ ଏକା ଦଶା । ପୂର୍ବର ଘଞ୍ଚ ଜଙ୍ଗଲ ଆଉ ନାହିଁ । ଏକଦା ବରୁଣାଈର ଶାଗୁଆନ କାଠ ଭାରତବିଖ୍ୟାତ ଥିଲା । ଘଞ୍ଚ ବରୁଣାଈ ଜଙ୍ଗଲରେ ବହୁ ବନ୍ୟଜନ୍ତୁ ରହୁଥିଲେ । କିନ୍ତୁ ଆଜି ସେ ଜଙ୍ଗଲ ନାହିଁ କିମ୍ବା ଜଙ୍ଗଲ ପଶୁ ନାହାନ୍ତି । ପରିବେଶର ସୁରକ୍ଷା ଆଇନକାନୁନ ଦ୍ୱାରା ସମ୍ଭବ ନୁହେଁ । ଲୋକେ ଯଦି ନିଜ ଗୋଡ଼ରେ ନିଜେ କୁରାଢ଼ି ମାରିବେ ତେବେ ତାଙ୍କୁ ରକ୍ଷା କରିବ କିଏ ?

ସମୟ ହୋଇଗଲା । ତିନିଟା ବାଜିବାକୁ ଦଶମିନିଟ୍ ବାକି ଥାଏ । ବରୁଣାଈଠାରୁ ପ୍ରାଣନାଥ ମହାବିଦ୍ୟାଳୟ ଗାଡ଼ିରେ ମାତ୍ର ପାଞ୍ଚମିନିଟ୍ର ରାସ୍ତା । ଯଥା ସମୟରେ ଡଃ ରଥ ଉତ୍ସବରେ ଯୋଗଦେଇ ଏନ. ସି. ସି. ଛାତ୍ରଛାତ୍ରୀ ଓ ପଦାଧିକାରୀମାନଙ୍କୁ ନିଜ ଭାଷଣରେ ଉତ୍ସାହିତ କଲେ ଓ ଗଛ ବଞ୍ଚିଲେ ଆମେ ବଞ୍ଚିବା ବୋଲି କହିଲେ । ଦେଶ ଓ ଦଶର ସୁରକ୍ଷା ପାଇଁ ଜଙ୍ଗଲ ସମ୍ପଦର ଅନିବାର୍ଯ୍ୟତାର ଆବଶ୍ୟକତା ସମ୍ପର୍କରେ କହିଲେ । ସଭାପରେ ପଦାଧିକାରୀଙ୍କ ଗହଣରେ କିଛି ସମୟ କଟାଇଲେ । ସେଠାରେ ଖୋରଧା ପାଇକମାନଙ୍କର ଚଳଣି, ବେଶ ପୋଷାକ, ପାଇକଖେଦା ନାମକ ପୁସ୍ତକରେ ପ୍ରାଞ୍ଜଳ ଭାବରେ ଲେଖାଥିବା ବହିରୁ ଖଣ୍ଡେ ଏନ. ସି. ସି. ଅଫିସରଙ୍କୁ ଦେଲେ । ତାଙ୍କର ପ୍ରେରଣା ବାସ୍ତବିକ୍ ଏ ପର୍ଯ୍ୟନ୍ତ କେହି ଭୁଲିନାହାନ୍ତି ।



# "ସମାଜ"

## ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

"ସମାଜ" କହିଲେ ରାଧାନାଥ ରଥଙ୍କୁ ବୁଝାଏ । ଓଡ଼ିଶାର ଆବାଳବୃଦ୍ଧବନିତା ତାଙ୍କୁ 'ସମାଜ'ର ସମ୍ପାଦକ ରୂପେ ଜାଣନ୍ତି । ଅନେକ ଚଗଲା ପିଲାଙ୍କୁ ସେ "ସମାଜ" ପଢ଼େ କି ନାହିଁ ପଚାରିଲେ ଉତ୍ତର ମିଳେ, "ହଁ 'ସାମାଜ'ଠାରୁ ଆରମ୍ଭ କରି 'ସମ୍ପାଦକ ରାଧାନାଥ ରଥ' ପର୍ଯ୍ୟନ୍ତ ପଢ଼େ ।" ତେଣୁ 'ସମାଜ' ଭିନ୍ନ ରାଧାନାଥ ରଥଙ୍କ ନାମ ଉଚ୍ଚାରଣ କରିହୁଏ ନାହିଁ । ଓଡ଼ିଶାରେ ଆଜି ଦୁଇଜଣ ପ୍ରତିଷ୍ଠାତା ସମ୍ପାଦକ ସେହିପରି ଚିରସ୍ମରଣୀୟ । ସେମାନେ ହେଲେ "ଉତ୍କଳ ଦୀପିକା"ର ଗୌରୀଶଙ୍କର ରାୟ ଓ "ଉତ୍କଳ ସାହିତ୍ୟ"ର ବିଶ୍ୱନାଥ କର । ଇତି-ମଧ୍ୟରେ ଆହୁରି କେତେଜଣ ସୁନାମଧନ୍ୟ ସମ୍ପାଦକ ଅଛନ୍ତି । ସେମାନେ କୃତବିଦ୍ୟ ସତ୍ୟ, କିନ୍ତୁ ନିଜ ସମ୍ପାଦିତ ପତ୍ରିକା ସହିତ ସେମାନେ ଏକାତ୍ମା ନୁହନ୍ତି ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ 'ସମାଜ'ର ପ୍ରତିଷ୍ଠାତାରୂପେ ଏହାର ସମ୍ପାଦକ ଥିଲେ । ସେ ନାମ କମାଇବା ଲାଗି ସମ୍ପାଦକ ହୋଇ ନ ଥିଲେ । ପତ୍ରିକାଟିକୁ ମଙ୍ଗଦେବା ଲାଗି ସେ ନିଜ ସେବାକାର୍ଯ୍ୟ ସହିତ ଏହି ଦାୟିତ୍ୱ ବହନ କରିଥିଲେ । ତାଙ୍କ ପରେ ଆଚାର୍ଯ୍ୟ ହରିହର ଦାସ ଓ ପଣ୍ଡିତ ନୀଳକଣ୍ଠ ଦାସ ସମ୍ପାଦକ ପଦ ମଣ୍ଡନ କରିଥିଲେ । ଶେଷରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଉପରେ ଏହି ଦାୟିତ୍ୱ ପଡ଼ିଥିଲା । 'ସମାଜ'ର ପ୍ରଥମ ପରିଚାଳକ ଥିଲେ ସ୍ୱର୍ଗତ ସତ୍ୟବାଦୀ ତ୍ରିପାଠୀ, ଯେ କି ପୁରୀର ଆଞ୍ଚଳିକ ସମ୍ବାଦଦାତା ଥିଲେ । ତାଙ୍କ ପରେ ପରିଚାଳନା ଦାୟିତ୍ୱ ରାଧାନାଥ ରଥଙ୍କ ଉପରେ ପଡ଼ିଲା । ଉତ୍କଳମଣିଙ୍କ ମୃତ୍ୟୁ ପୂର୍ବରୁ 'ସମାଜ' ସତ୍ୟବାଦୀରୁ କଟକ ନିମଚଉଡ଼ିକୁ ଆସିଯାଇଥିଲା । ଗୋପବନ୍ଧୁଙ୍କ କର୍ମୀ ଥିଲେ ପୁରୀ ଅଞ୍ଚଳର ଲୋକେ । ରାଧାନାଥ ରଥ ଥିଲେ ଆଠଗଡ଼ ରାଧାନାଥପୁର ଶାସନ ଅଧିବାସୀ । ଏକେ ତ ସେ ଉତ୍କଳମଣିଙ୍କର ବିଶ୍ୱସ୍ତ ସହକର୍ମୀ ଥିଲେ; ତାଙ୍କ ଉପରେ ଗୋପବନ୍ଧୁଙ୍କର ଅତୁଟ ବିଶ୍ୱାସ ଥିଲା । ଅପରପକ୍ଷରେ ସେ କଟକର ନିକଟତମ ଆଠଗଡ଼ର ଅଧିବାସୀ । ସେ ମଧ୍ୟ ଲୋକ-ସେବକ ମଣ୍ଡଳର ଶିକ୍ଷାନବିସ ହୋଇସାରିଥିଲେ । ତେଣୁ 'ସମାଜ' ତଥା 'ସତ୍ୟବାଦୀ ପ୍ରେସ'ର ପରିଚାଳନା ଦାୟିତ୍ୱ ନେବାଲାଗି ଉତ୍କଳମଣି ତାଙ୍କୁ ହିଁ ବାଛିଥିଲେ ।

ରାଧାନାଥ ରଥ ଜଣେ କର୍ମଠ ଓ କର୍ମତତ୍ପର ବ୍ୟକ୍ତି । 'ସମାଜ' ପ୍ରତି ତାଙ୍କର ଆଗ୍ରହ ଓ ଅନୁରକ୍ତି ଥିଲା । ଯେଉଁମାନେ ନିମଚଉଡ଼ି ଛକ ଉପରେ ଥିବା ଘରଟି ଦେଖିଛନ୍ତି, ସେମାନେ ଅନୁମାନ କରି-ପାରିବେ । 'ସମାଜ ଓ ସତ୍ୟବାଦୀ ପ୍ରେସ'ର କେତେ ସମ୍ବଳ ଥିଲା । ଆଜିର ଗୋପବନ୍ଧୁ ଭବନ ଆକାର ଦେଖିଲେ ପାର୍ଥକ୍ୟ ଜଣାପଡ଼ିବ । ଗୋଟିଏ ଟ୍ରେଡ଼ିଲ ମୁଦ୍ରାଯନ୍ତ୍ର ସାହାଯ୍ୟରେ ସୀମିତ ସଂଖ୍ୟାରେ ସମ୍ବାଦପତ୍ର ପ୍ରକାଶିତ ହେଉଥିଲା । ସେତେବେଳେ ଅବଶ୍ୟ ଏହା ଗୋଟିଏ ସାପ୍ତାହିକ ପତ୍ରିକା ଥିଲା ।

୧୯୩୦ରେ ମହାତ୍ମା ଗାନ୍ଧୀଙ୍କ ଡାଣ୍ଡୀ ଯାତ୍ରା ଦିନ ଏହା ଦିନକ ପାଇଁ ଦୈନିକ ପତ୍ରିକା ହୋଇଥିଲା ।

ପରେ ୧୯୩୧ରୁ ଏହା ଗୋଟିଏ ଦୈନିକ ପତ୍ରିକାରେ ରୂପାନ୍ତରିତ ହେଲା । ସେତେବେଳେ ଏହାର ମୂଲ୍ୟ ଥିଲା ପଇସାଏ । ଗୋପବନ୍ଧୁଙ୍କ କଳ୍ପନା ଥିଲା, 'ସମାଜ' ହେବ ଜନଶିକ୍ଷାର ମାଧ୍ୟମ । ଏହାର ସମ୍ପାଦକୀୟ ଭାଷା ଏପରି ସରଳ ହେବ ଯେ ନିରକ୍ଷର ଲୋକେ ବି କାନରେ ଶୁଣି ସୁଦ୍ଧା ବୁଝିପାରିବେ । ଏହି ପରଂପରା ଏବେ ମଧ୍ୟ ସୁରକ୍ଷିତ ରହିଛି ।

୧୯୪୪ରେ ପଣ୍ଡିତ ଲିଙ୍ଗରାଜ ମିଶ୍ର ଶିକ୍ଷା ଓ ସ୍ୱାସ୍ଥ୍ୟମନ୍ତ୍ରୀ ହୋଇ ଡକ୍ଟର ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଲେ । ଏତେକାଳ ପରିଚାଳକ ରୂପେ 'ସମାଜ'ର ମାନସ-ପିତା ଶ୍ରୀ ରଥ ସମ୍ପାଦକ ଆସନ ମଣ୍ଡନ କଲେ । ପଣ୍ଡିତ ମିଶ୍ର ମନ୍ତ୍ରୀ ହୋଇ ମଧ୍ୟ ସମ୍ପାଦକ ରହିପାରନ୍ତେ, କାରଣ ଏହି ପଦବୀ ଅବୈତନିକ ଥିଲା, କିନ୍ତୁ ସମ୍ପାଦନା ଦାୟିତ୍ୱ ତୁଲାଉଥିବା ବ୍ୟକ୍ତି ପୂର୍ବ ସମୟ ବା ଅନ୍ତତଃ ପକ୍ଷେ ସମ୍ପାଦକୀୟ ଲେଖିବା ଓ ମୁଦ୍ରିତ ପତ୍ରିକା ଯାଞ୍ଚ କରିବା ଲାଗି ଅଫିସ୍‌ରେ ଉପସ୍ଥିତ ରହିବା ଆବଶ୍ୟକ । ୧୯୫୨ ମଇ ମାସରେ ପଣ୍ଡିତ ଲିଙ୍ଗରାଜ ମିଶ୍ର ଲୋକସଭାକୁ ନିର୍ବାଚିତ ହୋଇଯିବାରୁ ଶ୍ରୀ ରାଧାନାଥ ରଥ ଅର୍ଥ, ଶିକ୍ଷା ଓ ସ୍ୱତନ୍ତ୍ର ସାହାଯ୍ୟ ବିଭାଗର ମନ୍ତ୍ରୀ ହିସାବରେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ । ପଣ୍ଡିତ ଲିଙ୍ଗରାଜ ସିନା ଛଅବର୍ଷ ମନ୍ତ୍ରୀ ଥିଲେ, ରାଧାନାଥବାବୁ ନଅବର୍ଷ ମନ୍ତ୍ରୀଆସନରେ ରହିଥିଲେ । ପଣ୍ଡିତ ଲିଙ୍ଗରାଜଙ୍କ ସ୍ଥାନରେ ରାଧାନାଥବାବୁ 'ସମାଜ'ର ସମ୍ପାଦକ ରହିବାରୁ ପୂର୍ବ ଐତିହ୍ୟ ଓ ପରଂପରା ଅକ୍ଷୁଣ୍ଣ ଥିଲା ଏବଂ ବାହାରଲୋକଙ୍କ ଅନୁପ୍ରବେଶ ପ୍ରାୟ ନ ଥିଲା । ରାଧାନାଥବାବୁଙ୍କ ସ୍ଥାନରେ ଗୃହବର୍ଷ ଆଗେ ଲିଙ୍ଗରାଜବାବୁ ଓ ପରେ ଶ୍ରୀହର୍ଷ ମିଶ୍ର ସମ୍ପାଦନା ଦାୟିତ୍ୱ ବହନ କରିବାରୁ "ସମାଜ"ର ରୂପରେଖ ବଦଳିବାକୁ ଆରମ୍ଭ କଲା, ଏପରି କି ୧୯୬୧ ଫେବୃଆରୀ ୨୦ ତାରିଖରେ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାପରେ ରାଧାନାଥବାବୁ ସମ୍ପାଦକ ଆସନ ହଠାତ୍ ଅଧିକାର କରିପାରି ନ ଥିଲେ । ସେତେବେଳେ ଆଶଙ୍କା ହେଉଥିଲା, ସେ ହୁଏ ତ ନିଜ ଆସନକୁ ଫେରିପାରିବେ ନାହିଁ । କିଛିଦିନ ପରେ ଲୋକସେବକ ମଣ୍ଡଳର କାର୍ଯ୍ୟକାରିଣୀ ସମିତି କଟକରେ ଅଧିବେଶନ କରି ବିଭିନ୍ନ ମତ ନେଇ ଶ୍ରୀହର୍ଷ ମିଶ୍ରଙ୍କ ସ୍ଥାନରେ ଶ୍ରୀଯୁକ୍ତ ରାଧାନାଥ ରଥଙ୍କୁ ସମ୍ପାଦକ ପଦରେ ପୁନରବସ୍ଥାପିତ କରିଥିଲେ ।

ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ଉତ୍କଳମଣିଙ୍କର ଐତିହ୍ୟର ଶେଷ ଦୀପଶିଖା । ଅନ୍ୟମାନେ ବିଭିନ୍ନ କାରଣରୁ ନିଜକୁ ଉତ୍କଳମଣିଙ୍କ ଆଦର୍ଶରେ ଅନୁପ୍ରାଣିତ ବୋଲି କହିଲେ ବା ପ୍ରମାଣ କଲେ ବି ଜନସାଧାରଣ ସେ କଥା ସହଜରେ ଗ୍ରହଣକରିବେ ନାହିଁ । ଏପରି କୌଣସି ବ୍ୟକ୍ତି ସମ୍ପାଦକ ହେଲେ ସମାଜ କାର୍ଯ୍ୟାଳୟରୁ ଆଭ୍ୟନ୍ତରୀଣ ବିସମ୍ବାଦ ସୃଷ୍ଟି ହୋଇପାରେ । ଉତ୍କଳମଣିଙ୍କର ପଞ୍ଚସଖାଙ୍କ ମଧ୍ୟରୁ ଗୃହଜଣ ଜୀବିତ ଥାଇ ସୁଦ୍ଧା ଓ ରାଧାନାଥ ରଥ ତାଙ୍କ ଅନ୍ତରଙ୍ଗ ସହକର୍ମୀ ରହି ମଧ୍ୟ ସେ ସମସାମୟିକ ପରିସ୍ଥିତିରେ କାହାରିକୁ ଦାୟିତ୍ୱ ନ ଦେଇ ଅବିଭକ୍ତ ଭାରତବର୍ଷର ସୁଦୂର ଲାହୋର ସହରରେ ଥିବା ଲୋକସେବକ ମଣ୍ଡଳ ହାତରେ ନିଜ ସମ୍ବାଦପତ୍ରର ଦାୟିତ୍ୱ ଅର୍ପଣ କରିଥିଲେ, କାରଣ ଓଡ଼ିଆମାନଙ୍କ ପରଶ୍ରୀକାତରତା ବିଷୟ ତାଙ୍କୁ ଜଣାଥିଲା । ଏହାର ଯେ ପୁନରାବୃତ୍ତି ନ ହେବ ଏ କଥା କିଏ କହିବ ? ତେଣୁ ନିଜ ମାନସପୁତ୍ର 'ସମାଜ'ର ସୁସଂପାଦନା ଓ ସୁପରି-ଚାଳନା ପାଇଁ ସେ ନିଜ ଜୀବଦ୍ଦଶାରେ ବ୍ୟବସ୍ଥା କରିଯିବା ପତ୍ରିକା ତଥା ଓଡ଼ିଶା ପାଇଁ ହିତକାରକ ହେବ ।

ମୋର ମନେହୁଏ ଲୋକସେବକ ମଣ୍ଡଳର କାର୍ଯ୍ୟକାରିଣୀ ସମିତିର ଗୋଟିଏ ଅଧିବେଶନ ଆହ୍ୱାନକରି ସେ ଜଣେ ମୁଖ୍ୟ ସଂପାଦକ ଓ ଜଣେ ସଂପାଦକ ନିଯୁକ୍ତ କରନ୍ତୁ ଏବଂ ସଂପାଦନା-ମଣ୍ଡଳୀରୁ ଲୋକସେବକମଣ୍ଡଳର ସଭ୍ୟ ନ ଥିବା କେତେଜଣ ପୁରୁଖା କର୍ମଚାରୀଙ୍କୁ ନେଇ ଗୋଟିଏ ପରାମର୍ଶଦାତାମଣ୍ଡଳୀ ଗଠନକରନ୍ତୁ । ସେମାନେ କେବଳ 'ସମାଜ'ର ସଂପାଦନା ବିଷୟରେ ମତ ଦେଇପାରିବେ, ଗୋପବନ୍ଧୁ ଭବନର ଆୟବ୍ୟୟ ସହିତ ସେମାନଙ୍କର କୌଣସି ସଂପର୍କ ରହିବ ନାହିଁ । 'ସମାଜ' କହିଲେ ଜନସାଧାରଣ ସଂବାଦପତ୍ର ବୋଲି ବୁଝନ୍ତି । କୌଣସି କାରଣରୁ ତାହା ବନ୍ଦ ହୋଇଗଲେ କିମ୍ବା 'ସମାଜ' ସୁସଂପାଦିତ ନ ହେଲେ ଲୋକେ ନିରାଶ ହୋଇଯିବେ । ଏହାର ସୂଚନା ମିଳିଲାଣି ବୋଲି କେତେ ଲୋକଙ୍କ ମତ ।

ସତ୍ୟାଳୟ, କୁକୁରଅପଦା, କଟକ



# ବିଶ୍ୱ ବଡ଼ଦାଣ୍ଡ ରଥେ ହୁଅନ୍ତୁ ସାରଥି

ନାରାୟଣ ବୀରବର ସାମନ୍ତ

ଉତ୍କଳ ଦେଶେ ଯେତେ ସମ୍ବାଦ ବିଭବ
ଏ ଶତାବ୍ଦୀ ବ୍ୟାପି ଚଳେ ଆଦର୍ଶରେ ତବ ।
ସାମ୍ବାଦିକତାର ନିତ୍ୟୋଜ୍ୱଳ ରାଜପଥ
ବାଛି ନେଇଅଛି ପୂଜ୍ୟ ରାଧାନାଥ ରଥ ।
ବାଧାବିଘ୍ନ ଆକ୍ରମଣ ଏ ଯୁଗ ଅଭ୍ୟାସ
ବରିନେଲ ନିଜସ୍କନ୍ଧେ ସବୁ ତ୍ରାସ ପ୍ରାସ ।
ଶାଶ୍ୱତ ବାର୍ତ୍ତା ପୃଷ୍ଠରେ ଭାଷା କଲେ ସୃଷ୍ଟି
ପଠନମାନେ ସର୍ବେ ବିରାଜଇ ତୁଷ୍ଟି ।
ଶତ ଶତ ସୁଲେଖକ ଦିବ୍ୟବ୍ରତ ପଣେ
ଚାଲିଛନ୍ତି ତବ ଭାଷା ଭଙ୍ଗି ଅନ୍ୱେଷଣେ ।
ଅଷ୍ଟୋତ୍ତର ଶତ ସମ୍ବତ୍ସର ଆଶୀର୍ବାଦ;
ପୁଣ୍ୟବଳେ ଲଭିଅଛି ଆୟୁ ଅପ୍ରମାଦ ।
ଯୋଗବଳେ ବସି ଭଲ ଖଟାଇ ବିବେକ
ଶାସନତନ୍ତ୍ରେ ବସୁଧା ହେବାପାଇଁ ଏକ ।
ରାଜନୀତି କ୍ଷେତ୍ରେ ଯାହା ମହା ସର୍ବସିଦ୍ଧି
ଦେଖିବାକୁ ପରମାୟୁ ଦେଇଛନ୍ତି ବିଧି ।
ଜନ୍ମାନ୍ତର ଲୋଡ଼ା ନାହିଁ ଏହି ଜନ୍ମେ ଶୁଭେ
ବିଶ୍ୱ ଶାନ୍ତି ପରିଣତି ଭୋଗିଯିବ ତୁମ୍ଭେ ।
ଶୁଭୁଅଛି ଶୁଭଶଙ୍ଖ ଧ୍ୱନି କର୍ଣ୍ଣେ କର୍ଣ୍ଣେ
ସମନ୍ୱୟ ସିଦ୍ଧି ଘଟିଲଣି ବର୍ଣ୍ଣେ ବର୍ଣ୍ଣେ ।
ବର୍ଣ୍ଣବିଦ୍ୱେଷ କଳଙ୍କ ଲେଖା ଇତିହାସେ
ନତମସ୍ତକେ ଲୋଡ଼ନ୍ତି କ୍ଷମା ମୁକ୍ତି ଆଶେ ।
କ୍ଷମିଲେ କ୍ଷମିବ ଏକା ଶ୍ରୀପୁରୁଷୋତ୍ତମ
ସିଦ୍ଧି ଯହିଁ ବର୍ଣ୍ଣ ସମନ୍ୱୟ ନିୟାକ୍ରମ ।

ଧର୍ମ ତାହା ନୁହେଁ, ମାନବିକ ମହାଭାବ
ମୂର୍ତ୍ତିମନ୍ତ ତଥି ବିଶ୍ୱେ ଏକମାତ୍ର ଠାବ ।
ଦେଶପ୍ରାଣ ଗୋପବନ୍ଧୁ ରାଜନୀତି କୋଳେ
ଏହି "ନୀତିରାଜ" ଦେଖିଥିଲେ ଶ୍ରଦ୍ଧାଭୋଳେ ।
ଲେଖିଯାଇଛନ୍ତି ନୀଳାଚଳର ମହିମା
ମାନବିକତାର ଯାହା ଅଟେ ଶେଷସୀମା ।
ବର୍ଣ୍ଣଚତୁଷ୍ଟୟ ମାନବିକତାର ଅଟେ
ଶ୍ୱେତ, ପୀତ, କୃଷ୍ଣ ସହ ଅବର୍ଣ୍ଣ ପ୍ରକଟେ ।
ବିଶ୍ୱେ ଲାଭ ହେବ ମାନବିକତା ଆସ୍ୱାଦ
ନ ରହିବ କାହିଁ ଭେଦ ବାଦ ବା ବିବାଦ ।
ମହାଦେଶମାନଙ୍କର ଏକମାତ୍ର ଗୁଣ
ପ୍ରବର୍ତ୍ତିବ, ନିବର୍ତ୍ତିବ ରଣ ଆଉ ଋଣ ।
ଆମ ଗୋପବନ୍ଧୁଙ୍କର ଏହି ଚିନ୍ତାରାଜି
ଚାଲୁଛନ୍ତି ରାଧାନାଥ ରଥେ ବସି ଆଜି ।
ସର୍ବସିଦ୍ଧି ହେବ ଭବେ ଅତି ହିଁ ନିକଟେ
ସିଦ୍ଧ ପୁରୁଷଙ୍କ ବାକ୍ୟ ଏହାହିଁ ପ୍ରକଟେ ।
ବଡ଼ ଦାଣ୍ଡ ବଡ଼ ପଣ୍ଡା ଯହିଁ ବଡ଼ ସବୁ
ସବୁ ବଡ଼ କରି ତହିଁ ବିରାଜନ୍ତି ପ୍ରଭୁ ।
ଭବ ଅବକାଶେ ବଡ଼ ସେହି ଅଟେ ସିନା
ବିଶ୍ୱବକ୍ଷେ ଆଉ କିଏ ବଡ଼ ତାହା ବିନା ।
ରାଧାନାଥ ପଟ୍ଟଶିଷ୍ୟ ଗୋପବନ୍ଧୁଙ୍କର
ଉତ୍କଳର ଏହି କଳାସାଧନେ ତତ୍ପର ।
ସମାଜର ସାଧିବାକୁ ସାମ୍ୟ ଅଗ୍ରଗତି
ବିଶ୍ୱ ବଡ଼ଦାଣ୍ଡ ରଥେ ହୁଅନ୍ତୁ ସାରଥି ।

ପାରାଦୀପ ଗଡ଼, କୁଜଙ୍ଗ



# 'ପ୍ରଣାମ ତୁମକୁ ଯୋଗୀ'

ଦୁର୍ଗାଚରଣ ଷଡ଼ଙ୍ଗୀ

ହେ' ଯୁଗସାଧକ
ଯୋଗୀ ରାଧାନାଥ
ଦୀନ, ପୀଡ଼ିତର ସାଥୀ,
ତୁମ ନିଶ୍ଚଳ
ନୀରବତା ଦେଖି
କାନ୍ଦେ ଓଡ଼ିଆ ଜାତି,
ଆର୍ତ୍ତଜନର ନୟନର ନିଧି ତୁମେ,
ରଖି ଦେଇଗଲ ମହାଦାମୀ ହୋଇ
ଯଶଃ ଉତ୍କଳ ଭୂମେ ।

ଯେ' ଯାହା ମାଗିଛୁ
ଖାଲି ତ ଫେରନି
ଭିକ୍ଷାର ଥାଳ ଧରି,
ଗୁରୁ ଗଉରବ
ରଖିଛ କରମେ
ସେହି ପଥ ଅନୁସରି ।
ସେଥିପାଇଁ ତୁମେ ଶତାବ୍ଦୀ ସାଧକ ଆଜ,
ବସିଛ ନୀରବେ ହୃତ ବୈଭବେ
ମୁକ୍ତ ପଥିକ ସାଜ ।

ମରଣ ଦୁଆରୁ
କେତେ କଙ୍କାଳ
ତୁମରି ସେନେହ ପାଇ,
ଫେରିଛି ଅଚିରେ
ତା' ଦୀନ କୁଟୀରେ
ଜୀବନର ଗୀତ ଗାଇ ।
ପର ଦୁଃଖରେ ଭଜାଇଛ ଲୁହେ ସ୍ମୃତି,
ବଢ଼ି, ମରୁଡ଼ିରେ କ୍ଷେତ, ନିଶ୍ଚିହ୍ନେ
ବଢ଼ାଇଛ ଧନ ବିତ୍ତ ।

ଦିଅ ଢାଳିଦିଅ
ଆଶିଷ ଅଭୟ
ଓଡ଼ିଆ ଜାତିର ପ୍ରାଣେ,
ପୁଲକିତ ହେଉ
ସ୍ନେହ-ମମତା ଓ
ସତ୍ୟର ଜୟଗାନେ ।
ନିଖିଳ ହୃଦୟ ଉଠୁ ଅମୃତେ ପୂରି,
ହୃତଗୌରବ ନିଶ୍ଚେ ଫେରିବ
ତୁମ ପଥ ଅନୁସରି ।

ଆର. ଏମ. ଆର. ସି. କମ୍ପାଉଣ୍ଡ, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର

# ଏ ଜାତିର ପ୍ରଣାମ ଘେନ

## ବାସୁଦେବ ସାମଲ

"ଜନ ଜୀବନ କାହିଁକି ବିପ୍ରର୍ଯ୍ୟସ୍ତ ହୋଇଉଠିଛି ? କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କ ଭୂମିକା ଉପରେ ସେମିନାର୍ କର । ଓଡ଼ିଶା ଏ ଦିଗରେ ଆଗୁଆ ନେତୃତ୍ୱ ନେଉ । ଓଡ଼ିଶାର ଖଣିଜ ସମ୍ପଦ ଥାଇ ମଧ୍ୟ ଲୋକେ ଗରିବ । ସଂବାଦପତ୍ର ସିନା ସମ୍ବାଦ ପରିବେଷଣ କରିବ ! ସାଙ୍ଗଠନିକ ଶକ୍ତି ବିନା କିଛି ସମ୍ଭବପର ନୁହେଁ, ଉଦ୍ୟମ କର ଆମେ ସାହାଯ୍ୟ କରିବୁ ।" ଏଇ ଗତ ଅଗଷ୍ଟ ୨୭ ତାରିଖ ଦିନ ସନ୍ଧ୍ୟାରେ ବାବୁଜୀ ଏକାକୀ ବସିଥାଆନ୍ତି 'ସମାଜ' ଅଫିସରେ । ତାଙ୍କୁ ଦେଖାକରିବା ସମୟରେ ଉପରୋକ୍ତ ପରାମର୍ଶ ଦେଇଥିଲେ ବାବୁଜୀ । ଆଗପରି ଚଳଚଞ୍ଚଳ ନ ଥିଲେ ମଧ୍ୟ ମାନସିକ ସ୍ତରରେ ସେହିପରି ସତେଜ ଅଛନ୍ତି ଆଜି ବାବୁଜୀ ।

୧୯୭୦ ମସିହାରୁ ତାଙ୍କ ସହ 'ରିଲିଫ' କାର୍ଯ୍ୟ କରିବାର ସୌଭାଗ୍ୟ ପାଇଛି । 'ଦାସେ ଆପଣେ'ଙ୍କ ଜୀବନୀ ପଢ଼ିଥିଲି । ସେଇ ଆଦର୍ଶରେ ବାବୁଜୀ ଜନସେବାର ନେତୃତ୍ୱ ଦେଇଛନ୍ତି ଓଡ଼ିଶାବାସୀଙ୍କୁ । ବନ୍ୟା, ମରୁଡ଼ି ଦୁର୍ଗତ ଲୋକଙ୍କ ପାଖରେ ସର୍ବପ୍ରଥମେ ପହଞ୍ଚିଛନ୍ତି ବାବୁଜୀ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପରି ଚୂଡ଼ା, ଗୁଡ଼ କଲ ଧରି ପହଞ୍ଚିଛନ୍ତି । ସେଇ ଦରଦୀ ପ୍ରାଣ ତାଙ୍କର । ସମବେଦନାରେ ଦୁଃଖୀ ମଣିଷର ଦୁଃଖ କମିଯାଇଛି । ଲୋକେ କୁହନ୍ତି—"ବାବୁଜୀ ଅଛନ୍ତି—ଆମ ଦୁଃଖ ନିଶ୍ଚୟ ଦୂର ହେବ ।" ୧୯୮୨ ମସିହାର ବନ୍ୟା । ରାଇଜଯାକର ଲୋକଙ୍କୁ ଏକାଠି କରାଇ ଲୋକଙ୍କୁ ବଞ୍ଚାଇଦେଲେ । ସେ ସେବାର ପଟାନ୍ତର ନାହିଁ ।

ଖାଲି ସେବାରେ ସେ ନିଜକୁ ସୀମିତ କରି ରଖି ନ ଥିଲେ । ଅନ୍ୟାୟ ଅତ୍ୟାଚାର ବିରୋଧରେ ସେ ପାହାଡ଼ ପରି ଠିଆହୋଇଛନ୍ତି । ନାରୀ ନିର୍ଯ୍ୟାତନା, ବ୍ୟଭିଚାର, ସାଂପ୍ରଦାୟିକତା ବିରୋଧରେ ତାଙ୍କର ଲେଖନୀ ଶତମୁଖ । ସାଂପ୍ରଦାୟିକ ଦଙ୍ଗା ସମୟରେ ବାବୁଜୀ ସଦ୍ଭାବ ଓ ସମ୍ପ୍ରୀତି ଫେରାଇ ଆଣିବାରେ ଆଗୁଆ । ଆଜି ମଧ୍ୟ ଅନ୍ୟ ପାଇଁ ତାଙ୍କର ହୃଦୟ ଉଦ୍‌ବେଳିତ ।

ତାଙ୍କ ଉପରେ ରାଜ୍ୟବାସୀଙ୍କର ଅତୁଟ ଭରସା । ଏକ ସମୃଦ୍ଧ ରାଜ୍ୟଗଠନରେ ତାଙ୍କର ଭୂମିକା ଆମ ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛି । ବନ୍ୟା ମରୁଡ଼ି ଦୁର୍ଗତ ଲୋକଙ୍କ ସେବା-କରିବା ସମୟରେ ସେ ଦ୍ୱିଗୁଣିତ ଶକ୍ତି ଦେଇ କାର୍ଯ୍ୟ କରିପାରନ୍ତି । ଅନ୍ୟାୟ ଅତ୍ୟାଚାର ବିରୋଧରେ ଅନୁରୂପ ଶକ୍ତିସଞ୍ଚାର । ରାଜ୍ୟବାସୀଙ୍କ ସ୍ୱାର୍ଥକୁ ସେ ଅଗ୍ରାଧିକାର ଦେଇଥାଆନ୍ତି । ଏଇଥିପାଇଁ ସେ ସଦାସର୍ବଦା ଜନବିରୋଧୀ କାର୍ଯ୍ୟ କରୁଥିବା ଶାସକ-ବର୍ଗଙ୍କ ବିରୋଧରେ ଲେଖନୀ ଚଳାଇଛନ୍ତି । ଏଥିପାଇଁ ତାଙ୍କୁ ବହୁ ମୂଲ୍ୟ ଦେବାକୁ ପଡ଼ିଛି । କିନ୍ତୁ ଶେଷରେ ତାଙ୍କର ବିଜୟ ହୋଇଛି । କ୍ଷମତା-ଲିପ୍ସୁ କ୍ଷମତାନ୍ଧ ରାଜନୀତିଜ୍ଞମାନେ ତାଙ୍କ ପାଖରେ ହାର ମାନିଛନ୍ତି । ପ୍ରତିଶୋଧପରାୟଣ କେବେ ସେ ହୋଇନାହାନ୍ତି । ପରନ୍ତୁ କ୍ଷମା ଗୁଣରେ ସେ ମହୀୟାନ୍ । ଆଜି ତାଙ୍କର ୯୮ ତମ ଜୟନ୍ତୀ । ସେ ଦୀର୍ଘାୟୁ ହୋଇ ସୁସ୍ଥ ଶରୀରରେ 'ବଣିଦର' ପରି ଏ ଜାତିକୁ ପଥ ଦେଖାନ୍ତୁ—ଏଇ ଆମର ପ୍ରାର୍ଥନା ।

* *

# ପ୍ରଣାମ

ସୁକାନ୍ତା ପ୍ରିୟମ୍ବଦା

ଏଭଳି ପ୍ରତିକୃତି, ବୀରଭଦ୍ର, ଏଭଳି ସର୍ବାଙ୍ଗ ସୁଜନ
ମୁଷ୍ଟିମେୟ, ଅତି ସଂଖ୍ୟାଲଘୁ
ଅଧିକାଂଶ ମଣିଷଙ୍କ ବିଭକ୍ତ ହୃଦୟ
        ତଥାପି ରହିଛି ବ୍ୟତିକ୍ରମ
ମାତ୍ର ଜଣେ ବା ଦି'ଜଣ
ପ୍ରାଚୀନ ବଟବୃକ୍ଷ ଭଳି ଯେଉଁମାନେ
        ସ୍ଥାୟୀ ବିଚରନ୍ତି ।

ବିନଷ୍ଟ ଭୂମି ଓ ଶସ୍ୟ,
ଭଗ୍ନଚୂଡ଼ା ପର୍ବତର ନିର୍ମିତ ପ୍ରତିମା
ତା' ଭିତରେ ଏକଲବ୍ୟ, ଜିଦ୍‌ଖୋର
        ଜୀବନ୍ତ ନିକଷ ପଥର
ଆପଣା ଭିତରେ ଆପେ ହୁଏତ ରକ୍ତାକ୍ତ
ତଥାପି ସେଇ ଏକଇ ଦୃଶ୍ୟ, ସୀମା
ପରାଭବ-ମୃତ୍ୟୁ ନୁହେଁ
        ସ୍ତବ୍ଧ ନୁହେଁ ସୀକାନ୍ତଙ୍କ ସେଇ କଣ୍ଠସ୍ୱର ।

ସେଦିନର ସ୍ୱଚ୍ଛ ନୀଳ ଜଳଧାରା ଆଜି ସ୍ୱଚ୍ଛ ନାହିଁ
        ଭୀଷଣ ପଙ୍କିଳ,
ସମ୍ମୁଖେ ଉଭା ରହିଛି ବହୁବିଧ ଶଙ୍କାର ପାହାଡ଼
ଉଦ୍‌ବେଗ, ସଂଶୟ, ଦ୍ୱନ୍ଦ୍ୱ ଭଗ୍ନ ଶକ୍ତି ଢାଲ
ନଗ୍ନ କରି ଭିତରର ଅନାବୃତ
        ଗାଢ଼ ଅନ୍ଧକାର ।

ଏଇ ଦାହ
ଏଇ ଅସ୍ଥିରତା
ଏଇ ସବୁ ଯୌନ-ବିକଳତା
ହତ୍ୟା, ହିଂସା, ଘୃଣା···
ତା' ଭିତରେ ତଥାପି ରହିଛି
        ସମସ୍ତର ଅବମିଶ୍ର ଦୁର୍ଲଭ ନମୁନା ।

□

କ୍ରାନ୍ତଦର୍ଶୀ
କାଳଦର୍ଶୀ
ଅପରାଜେୟ ଇଚ୍ଛାମୃତ୍ୟୁ-ଯୋଗୀ
ହେ ଶରଶାୟୀ ଭୀଷ୍ମ
        ତୁମକୁ ସହସ୍ର ପ୍ରଣାମ !

ପୁଷ୍ପ-୭୫୨୦୦୧



# "ପଦ୍ମଭୂଷଣ ଡକ୍‌ଟର ରାଧାନାଥ ରଥ"

## (ଡକ୍‌ଟର ରଥଙ୍କ ଉପରେ ପ୍ରାମାଣିକ ଚଳଚ୍ଚିତ୍ର)

**ପ୍ରମୋଦ କୁମାର ମହାପାତ୍ର**

ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥଙ୍କ ଆତ୍ମଜୀବନୀସମ୍ବଳିତ ପ୍ରଥମ ପ୍ରାମାଣିକ ଚଳଚ୍ଚିତ୍ର ଆସନ୍ତା ବର୍ଷ ମୁକ୍ତିଲାଭ କରିବାକୁ ଯାଉଛି । କେନ୍ଦ୍ର-ସରକାରଙ୍କ ଫିଲ୍ମ ଡିଭିଜନ ଏହି ଚଳଚ୍ଚିତ୍ର ନିର୍ମାଣ କରୁଛନ୍ତି । ଚଳଚ୍ଚିତ୍ରର ସମୟ ପ୍ରାୟ ଏକ ଘଣ୍ଟା ହେବ । ସବୁଠାରୁ ଉଲ୍ଲେଖଯୋଗ୍ୟ ଯେ ସାରା ଭାରତର ମନୀଷୀମାନଙ୍କ ଜୀବନୀ ଉପରେ ପୂର୍ବରୁ ଏ ପ୍ରକାର ମାତ୍ର ୪୭ ଟି ଚଳଚ୍ଚିତ୍ର ନିର୍ମାଣ କରାଯାଇଛି । ଏହି ଚଳଚ୍ଚିତ୍ରର ପ୍ରଯୋଜକ ଓ ନିର୍ଦ୍ଦେଶକ ଭାବେ ପ୍ରଖ୍ୟାତ ନିର୍ଦ୍ଦେଶକ ଶ୍ରୀ ଘନଶ୍ୟାମ ମହାପାତ୍ର ନିଯୁକ୍ତ ହୋଇଛନ୍ତି ଓ କ୍ୟାମେରାମ୍ୟାନ ଅଛନ୍ତି ଶ୍ରୀ ସୁରେନ୍ଦ୍ର ସାହୁ । କେନ୍ଦ୍ର ସରକାର ଏଥିପାଇଁ ୧୦ ଲକ୍ଷରୁ ଅଧିକ ଅର୍ଥ ଖର୍ଚ୍ଚ କରୁଛନ୍ତି ।

ଚଳଚ୍ଚିତ୍ର ପାଇଁ ପ୍ରାରମ୍ଭିକ ସୁଟିଂ କାର୍ଯ୍ୟ ଚଳିତ-ବର୍ଷ ଅଗଷ୍ଟ ମାସରୁ ଆରମ୍ଭ ହୋଇଛି । ଡକ୍ଟର ରଥଙ୍କ ଜନ୍ମସ୍ଥାନ ତଥା କର୍ମକ୍ଷେତ୍ର ଆଠଗଡ଼, 'ସମାଜ' ଅନୁଷ୍ଠାନ ଓ କଟକ, ଭୁବନେଶ୍ୱର ତଥା ସାକ୍ଷୀଗୋପାଳ ଓ ପୁରୀ ଅଞ୍ଚଳରେ ସୁଟିଂ କାର୍ଯ୍ୟ ଚାଲିଛି । ଆସନ୍ତା ବର୍ଷ ଜାନୁଆରୀ ମାସ ମଧ୍ୟରେ ଚଳଚ୍ଚିତ୍ର ପାଇଁ ସମସ୍ତ ସୁଟିଂ କାର୍ଯ୍ୟ ସରିଯିବ ଓ ମାର୍ଚ୍ଚ ମାସ ବେଳକୁ ଚଳଚ୍ଚିତ୍ର ମୁକ୍ତିଲାଭ କରିପାରିବ ବୋଲି ନିର୍ଦ୍ଦେଶକ ଶ୍ରୀ ଘନଶ୍ୟାମ ମହାପାତ୍ର ପ୍ରକାଶ-କରିଛନ୍ତି । ଡକ୍ଟର ରଥଙ୍କ ପରି ବୟୋବୃଦ୍ଧ ଲୋକଙ୍କର ପ୍ରତ୍ୟକ୍ଷଭାବେ ଚିତ୍ର ଗ୍ରହଣ କରି ଚଳଚ୍ଚିତ୍ର ପ୍ରସ୍ତୁତ କରିବା ସାରା ଭାରତରେ ପ୍ରଥମ ଘଟଣା ବୋଲି ସେ ମତପ୍ରକାଶ କରିଛନ୍ତି ।

ଏହି ଚଳଚ୍ଚିତ୍ରର ଶୁଭ ମହୁରତ ଉତ୍ସବ କଟକ ଶହୀଦ ଭବନଠାରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରୀ ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ, ରେଳବାଇ ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା, ବିଧାନସଭାର ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ପ୍ରମୁଖ ଯୋଗଦେଇଥିଲେ । ହୁଳହୁଳି ଶଙ୍ଖଧ୍ୱନି ମଧ୍ୟରେ ଓ ଉପସ୍ଥିତ ଜନତାଙ୍କ କରତାଳି ମଧ୍ୟରେ ଏହି ଶୁଭକାର୍ଯ୍ୟ ଆରମ୍ଭ କରାଯାଇଥିଲା ।

ଚଳଚ୍ଚିତ୍ରଟି ଡକ୍ଟର ରଥଙ୍କ କର୍ମମୟ ଜୀବନର ସ୍ୱାକ୍ଷର ବହନ କରିବ ବୋଲି ଆଶା କରାଯାଏ ।

ସହ-ସମ୍ପାଦକ, "ସମାଜ" କଟକ



# ଶତାବ୍ଦୀ ପୁରୁଷ

## ଡକ୍ଟର ପ୍ରସନ୍ନ ପାଟଶାଣୀ

ତୁମେ ଶତାବ୍ଦୀଟିଏ
ହେ ଯୁଗପୁରୁଷ
ତମ ଯଶ ଲଭିବାର ନାହିଁ,
ଶତାବ୍ଦୀରୁ—

ତମେ ଏକ ଇତିହାସ—
କିମ୍ବଦନ୍ତୀଟିଏ ।
ଯେତେଦିନଯାଏ
ସମ୍ବାଦପତ୍ର ବଞ୍ଚିରହିଥିବ
ସେତେଦିନଯାଏ
ତମ ଛବି ଭିତରୁ କୋଟି ମଣିଷର
ଲୁହ ନଗିଡ଼ି ପଡ଼ୁଥିବ
କାଳହୋଇ—ଆଗାମୀ ପୁରୁଷ ପାଇଁ ।

ହେ ପୁରୁଷାର୍ଥ !
ଜୀବନର ଅର୍ଥ କଣ ତୁମେ ଜାଣ,
ତମେ ଜାଣ ସାଧନାର ମୂଲ୍ୟ
ଦେଶପ୍ରୀତି-ସ୍ୱଜନମୀତି ।

ତମରିପାଇଁ
ଏଇ ପୃଥିବୀରେ ଫୁଲ ଏମିତି ଫୁଟୁଥିବ,
ନଦୀ ଏମିତି ଝରୁଥିବ,
ସକାଳର ସୂର୍ଯ୍ୟ ଏମିତି ଉଇଁଥିବ,
ଆଉ ଏକ ଶତାବ୍ଦୀର ପୁନର୍ଜନ୍ମ ହେବ !

ମନ୍ତ୍ରୀ, ପେନ୍‌ସନ୍ ଓ ଅଭିଯୋଗ ବିଭାଗ
୨, ନୂଆପଲ୍ଲୀ, ଭୁବନେଶ୍ୱର-୩

# ଯୁଗପୁରୁଷ ରାଧାନାଥ ରଥ

ବିଶ୍ୱନାଥ ପଣ୍ଡିତ

ଓଡ଼ିଶାର ବରପୁତ୍ର ଶ୍ରୀଯୁକ୍ତ ରାଧାନାଥ ରଥ ୧୮୯୭ ମସିହାରେ ଆଠଗଡ଼ସ୍ଥ ରାଧାନାଥପୁର ଶାସନରେ ଜନ୍ମହୋଇଥିଲେ । ଆଜ ଚାରିବର୍ଷ ପରେ ତାଙ୍କର ବୟସ ଶହେ ବର୍ଷରେ ପଦାର୍ପଣ କରିବ । ୧୯୧୯ ମସିହା ଅକ୍ଟୋବର ମାସରେ ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପାଦନାରେ ଯେତେବେଳେ "ସମାଜ" ଖବରକାଗଜ ସାପ୍ତାହିକ ଆକାରରେ ପ୍ରକାଶିତ ହେଉଥିଲା ସେତେବେଳେ ସେ ଥିଲେ ତାର ପରିଚାଳନା ସମ୍ପାଦକ । ସେହିଦିନଠୁ ସେହି ସମ୍ବାଦପତ୍ର ସହିତ ସେ ଜଡ଼ିତ ହୋଇ ରହିଛନ୍ତି । ଡବଲ୍ କ୍ରାଉନ୍ ସାଇଜ୍‌ର କ୍ଷୁଦ୍ର କଳେବର ନେଇ ପ୍ରକାଶ ପାଇଥିବା "ସମାଜ" ସାପ୍ତାହିକୀ ଦୈନିକ ସର୍ବାଧିକ ପ୍ରସାରିତ ସମ୍ବାଦପତ୍ର ଭାବରେ କେବଳ ଓଡ଼ିଶା ନୁହେଁ, ଓଡ଼ିଶା ବାହାରେ ମଧ୍ୟ ପ୍ରସିଦ୍ଧି ଲାଭ କରିଛି । ଆଜ ଅନେକଗୁଡ଼ିଏ ଓଡ଼ିଆ ଦୈନିକ ସମ୍ବାଦପତ୍ର ପ୍ରକାଶ ପାଉଥିଲେ ସୁଦ୍ଧା ଗାଁଗହଳର ଲୋକେ ଖବର କାଗଜ କହିଲେ 'ସମାଜ' କାଗଜକୁ ହିଁ ବୁଝିଥାଆନ୍ତି । 'ସମାଜ' କାଗଜର ପ୍ରସାର, ପ୍ରଚାର, ପ୍ରତିଷ୍ଠା ପଛରେ ଯାହାଙ୍କର ନିରଳସ ସାଧନା, ନିଃସ୍ୱାର୍ଥପର ଏକାଗ୍ରତା ରହିଛି, ସେ ହେଉଛନ୍ତି ଓଡ଼ିଶାର ସର୍ବମାନ୍ୟ ଜନସେବକ ଲୋକ-ସେବକ ମଣ୍ଡଳର ବରିଷ୍ଠ ସଭ୍ୟ ଶ୍ରୀଯୁକ୍ତ ରାଧାନାଥ ରଥ । ତାଙ୍କୁ ଯେତେବେଳେ ବାଇଶ ବର୍ଷ ବୟସ, ସେ ସରକାରୀ ଚାକିରି ଛାଡ଼ି ଗୋପବନ୍ଧୁଙ୍କ ଆମନ୍ତ୍ରଣ କ୍ରମେ 'ସମାଜ' କାଗଜର ପରିଚାଳନା ଦାୟିତ୍ୱ ନେଇଥିଲେ । ଆଜ ଛୟାନବେ ବର୍ଷ ବୟସରେ ସୁଦ୍ଧା ସେ 'ସମାଜ'ର ସମ୍ପାଦନା ଦାୟିତ୍ୱ ତୁଲାଇ ଯାଉଛନ୍ତି । ସ୍ୱାସ୍ଥ୍ୟଭଙ୍ଗ, ପାରିବାରିକ ଜଞ୍ଜାଳ ତାଙ୍କୁ ତାଙ୍କ କର୍ତ୍ତବ୍ୟରୁ ବିଚ୍ୟୁତ କରିପାରିନାହିଁ । କେବଳ ଓଡ଼ିଶା କିମ୍ବା ଭାରତବର୍ଷ ନୁହେଁ, ବୋଧହୁଏ ସାରା ପୃଥିବୀରେ ଦୀର୍ଘ ଚଉସ୍ତରି ବର୍ଷ କାଳ ପ୍ରଥମେ ପରିଚାଳନା ସମ୍ପାଦକ ଓ ପରେ ସମ୍ପାଦକ ଦାୟିତ୍ୱ ତୁଲାଇଥିବା ସାମ୍ବାଦିକ ଦ୍ୱିତୀୟ କେହି ଥିବା କଥା ମୋତେ ଅନ୍ତତଃ ଜଣାନାହିଁ । ସେ ଦୃଷ୍ଟିରୁ ରାଧାନାଥବାବୁ ସାରା ବିଶ୍ୱର ବରିଷ୍ଠ, ବରେଣ୍ୟ ସାମ୍ବାଦିକ ଏବଂ ସମ୍ପାଦକ ଭାବରେ ଅବଶ୍ୟ ସ୍ମରଣୀୟ ହୋଇ ରହିବେ ।

ଉତ୍କଳମଣି ଗୋପବନ୍ଧୁ ଜୀବିତ ଅବସ୍ଥାରେ ଚାହିଁଥିଲେ ସୁଦ୍ଧା ସାପ୍ତାହିକ 'ସମାଜ'କୁ ଦୈନିକ ଖବରକାଗଜରେ ରୂପାନ୍ତରିତ କରିପାରିନଥିଲେ । ତାଙ୍କର ସେହି ଅସମ୍ପୂର୍ଣ୍ଣ ସ୍ୱପ୍ନକୁ ସଫଳ କରିଥିଲେ ତାଙ୍କର ସୁଯୋଗ୍ୟ ଦାୟାଦ ରାଧାନାଥ ରଥ । 'ସମାଜ' କାଗଜର କ୍ରମୋନ୍ନତିର ଇତିହାସ ହେଉଛି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଶା ଓ ଓଡ଼ିଆ-ମାନଙ୍କର ସ୍ୱାର୍ଥରକ୍ଷା ଲାଗି ଅବିଶ୍ରାନ୍ତ ସଂଗ୍ରାମ, ସ୍ୱାଧୀନତା ଆନ୍ଦୋଳନ ଏବଂ ନୂତନ ସ୍ୱାଧୀନ ଦେଶ-ନିର୍ମାଣର ଇତିହାସ । ଲୋକଙ୍କ ଦୁଃଖ ଦୁର୍ଦ୍ଦଶା,

ଅଭାବ ଅଭିଯୋଗ, ମଫସଲ ସମ୍ବାଦଠାରୁ ଆରମ୍ଭ କରି ଆନ୍ତର୍ଜାତିକ ସମ୍ବାଦ ପରିବେଷଣ ପର୍ଯ୍ୟନ୍ତ ସବୁ ଖବର ଲୋକେ ବୁଝିପାରିଲାଭଳି ଭାଷାରେ 'ସମାଜ' ଯେପରି ନିରପେକ୍ଷ ଭାବରେ ପ୍ରକାଶକରି ଆସିଛି, ବ୍ରିଟିଶ୍ ସରକାରଙ୍କଠାରୁ ଆରମ୍ଭକରି ସ୍ୱାଧୀନତା ପରବର୍ତ୍ତୀ ଯୁଗର ସ୍ୱଦେଶୀ ଶାସକମାନଙ୍କ ଭ୍ରୂକୁଟିକୁ ଭ୍ରୂକ୍ଷେପ ନକରି ଶୋଷିତ, ଅତ୍ୟାଚାର, ଦୁର୍ନୀତିକୁ ମଧ୍ୟ ଏହା ନିର୍ଭୟରେ ପ୍ରକାଶ କରି ସାମ୍ବାଦିକତାର ଉଜ୍ଜ୍ୱଳ ପରମ୍ପରା ରକ୍ଷା କରିପାରିଛି । ବିରୋଧୀଦଳ ଦୁର୍ବଳ ଥିବାବେଳେ 'ସମାଜ' ଜନସ୍ୱାର୍ଥର ଜାଗ୍ରତ ପ୍ରହରୀ ଭାବରେ ସରକାରଙ୍କ ଦୋଷତ୍ରୁଟିକୁ ପଦାରେ ପକାଇ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଭାବରେ ସମ୍ବାଦପତ୍ରର ମହାନ୍ ଭୂମିକା ପାଳନ କରି ଆସିଛି । ଏହା ସମ୍ଭବ ହୋଇଛି ରାଧାନାଥବାବୁଙ୍କ ଗଭୀର ଦେଶପ୍ରେମ, କର୍ତ୍ତବ୍ୟବୋଧ ଏବଂ ନିରପେକ୍ଷ ଦୃଷ୍ଟିଭଙ୍ଗୀ ଯୋଗୁ । ତଥ୍ୟମୂଳକ ସମ୍ପାଦକୀୟ ଅଗ୍ରଲେଖାରେ ତାଙ୍କର ପାଣ୍ଡିତ୍ୟ, ଭାଷାର ଲାଳିତ୍ୟ ଯେପରି ପରିସ୍ଫୁଟ, ଜାତୀୟ, ଆନ୍ତର୍ଜାତିକ ଘଟଣା ସଂପର୍କରେ ତାଙ୍କର ଉପଲବ୍ଧି ଓ ଦୂରଦୃଷ୍ଟିର ପରିଚୟ ମଧ୍ୟ ସେହିପରି ସୁସ୍ପଷ୍ଟ । ଆଜି ପରିଣତ ବୟସରେ ସୁଦ୍ଧା ସେ ଯେପରି 'ସମାଜ' ସଂପାଦନା ଦାୟିତ୍ୱ ତୁଲାଇ ଯାଉଛନ୍ତି, ଭାବିଲେ ସ୍ୱତଃ ତାଙ୍କର ଦାୟିତ୍ୱବୋଧ ଏବଂ ପ୍ରତିଭା ପାଖରେ ମସ୍ତକ ଅବନତ ହୋଇ ଆସେ ।

ରାଧାନାଥବାବୁ କେବଳ ଜଣେ ବରିଷ୍ଠ ସଂପାଦକ ନୁହନ୍ତି, ଜଣେ ବିଚକ୍ଷଣ ରାଜନୀତିଜ୍ଞ ଭାବରେ ମଧ୍ୟ ସେ ସମ୍ମାନିତ । ୧୯୪୨ ମସିହା ମହାତ୍ମା ଗାନ୍ଧୀଙ୍କର ଭାରତ ଛାଡ଼ ଆନ୍ଦୋଳନ ଡାକରାରେ ସେ ଅଢ଼େଇ ବର୍ଷରୁ ଊର୍ଦ୍ଧ୍ୱ ବ୍ରହ୍ମପୁର ଜେଲରେ ଅଟକବନ୍ଦୀ ହୋଇଥିଲେ ଓ ସେତେବେଳେ ଜଣେ ଯୁବକ ହିସାବରେ ତାଙ୍କର ସାନ୍ନିଧ ଲାଭ କରିବାର ସୁଯୋଗ ପାଇଥିଲି । ୧୯୫୨ ମସିହାରୁ ୧୯୬୨ ମସିହା ମଧ୍ୟରେ ଆଠଗଡ଼ ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇ ସେ ମନ୍ତ୍ରୀମଣ୍ଡଳରେ ମଧ୍ୟ ଯୋଗ ଦେଇଥିଲେ । ଶିକ୍ଷା, ଅର୍ଥ, କୃଷି ଏବଂ ଜଙ୍ଗଲ ବିଭାଗର ମନ୍ତ୍ରୀ ଭାବରେ ସେ ନିଜ ପ୍ରଶାସନିକ ଦକ୍ଷତା ଓ କୃତିତ୍ୱର ପରିଚୟ ଦେଇଛନ୍ତି । କଂଗ୍ରେସ ରାଜନୀତିର ସଙ୍କୀର୍ଣ୍ଣତା ଓ ଅସହିଷ୍ଣୁତା ଯୋଗୁ ସେ କ୍ଷମତା ରାଜନୀତିରୁ ଦୂରେଇ ଯାଇଥିଲେ ସୁଦ୍ଧା ଲୋକପ୍ରିୟ ସମ୍ବାଦ ଦୈନିକ 'ସମାଜ' ଜରିଆରେ ସେ ଯେ ନିରପଦ ଦୂରତ୍ୱରେ ଥାଇ ଓଡ଼ିଶା ରାଜନୀତିକୁ ପ୍ରଭାବିତ କରିଆସୁଛନ୍ତି, ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ ।

ରାଧାନାଥବାବୁ ନିର୍ବାଚନ ରାଜନୀତିରେ ଅଂଶଗ୍ରହଣ କରି ଆଠଗଡ଼ରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବାବେଳେ ସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀଙ୍କୁ ଜିତାଇବାପାଇଁ ମୁଁ ତାଙ୍କ ବିରୁଦ୍ଧରେ ନିର୍ବାଚନ ପ୍ରଚାର କରିଛି । କିନ୍ତୁ ତାଙ୍କ ସହିତ ରାଜନୈତିକ ମତଭେଦ ସତ୍ତ୍ୱେ କେବେହେଲେ ମନାନ୍ତର ଘଟିନାହିଁ, ଭୁଲ ବୁଝାମଣା ହୋଇନାହିଁ । ତାଙ୍କପରି ସ୍ନେହ-ପ୍ରବଣ, ଉଦାର-ହୃଦୟ ବ୍ୟକ୍ତି ଆଜିର ସମାଜରେ ବିରଳ । ବନ୍ୟାପ୍ରପୀଡ଼ିତ, ଦୁର୍ଭିକ୍ଷକବଳିତ, ନିରାଶ୍ରୟ, ଅସହାୟ ଲୋକଙ୍କପାଇଁ ସେ "ସମାଜ" ପୃଷ୍ଠାରେ ଯେପରି ସମବେଦନା ପ୍ରକାଶ କରନ୍ତି, ନିଜେ ରିଲିଫ୍ ଦ୍ରବ୍ୟ ଧରି ମଧ୍ୟ ସେହିପରି ସେମାନଙ୍କ ପାଖରେ ପହଞ୍ଚିଥାଆନ୍ତି । ଶ୍ରମିକଶ୍ରେଣୀ, ବିଶେଷତଃ ଅସଂଗଠିତ କେନ୍ଦୁପତ୍ର ଓ ଶାଳମଞ୍ଜି ଭଳି ନିଷ୍ପେଷିତ ଶ୍ରମିକମାନଙ୍କ ପାଇଁ ସେ ଯେପରି ସାହାଯ୍ୟ କରିଆସିଛନ୍ତି, ସେଥିରେ ତାଙ୍କର ଆନ୍ତରିକତା ଯେ କେତେ ଗଭୀର, ତାହା ମୋ ନିଜ ଅଭିଜ୍ଞତାରୁ ମୁଁ ଭଲଭାବରେ ଜାଣିଛି । ଅଗ୍ରାଧିକାର ଭିତ୍ତିରେ ଶ୍ରମିକଙ୍କ ଦାବି ଓ ଆନ୍ଦୋଳନ ସଂପର୍କୀୟ ସମ୍ବାଦ ଛାପିବାରେ ସେ କେବେ କାର୍ପଣ୍ୟ କରିନାହାନ୍ତି ।

ଦେଶ ଆଜି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଉପସ୍ଥିତ । ହିଂସା, ଈର୍ଷା, ଅସହିଷ୍ଣୁତା ଯେପରି ଘବରେ ଆମ ସମାଜକୁ ବାରୁଦଗଦା ଉପରେ ବସାଇଦେଇଛି, କ୍ଷୁଦ୍ରସ୍ୱାର୍ଥ, ଦୁର୍ନୀତି, ଅପାରଗତା, ଓ ଧର୍ମାନ୍ଧତା ଯୋଗୁ ଆମ ଦେଶର ରାଜନୀତି ମଧ୍ୟ ଏକ ବିସ୍ଫୋରିତ ଅବସ୍ଥାରେ ପହଞ୍ଚିଛି । ଏଭଳି ସଙ୍କଟମୟ ମୁହୂର୍ତ୍ତରେ ରାଧାନାଥବାବୁଙ୍କ ଭଳି ଅନୁଭବୀ, ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିଙ୍କର ଉପସ୍ଥିତି ଓ ନେତୃତ୍ୱ ଅଧିକ ଜରୁରୀ ମନେହେଉଛି । ମୁଁ ତାଙ୍କର ନୀରୋଗ, ଦୀର୍ଘଜୀବନ କାମନା କରିବା ସଙ୍ଗେ ସଙ୍ଗେ ପଥଭ୍ରଷ୍ଟ ଜାତି ଓ ଲକ୍ଷ୍ୟଚ୍ୟୁତ ସମାଜକୁ ଉପଯୁକ୍ତ ମାର୍ଗ ନିର୍ଦ୍ଦେଶ ଦେବାରେ ସେ ନିଜର ଉପଯୁକ୍ତ ଭୂମିକା ପାଳନ କରିବେ ବୋଲି ଆଶା କରୁଅଛି ।

ଗୃଦ୍ଧନଚୌକ, କଟକ-୧



ଯାହାଙ୍କ ସମଗ୍ର ଜୀବନ ଦେଶ ଓ ଜାତିର ସେବାରେ ନିୟୋଜିତ,

ସେହି ମହାନ୍ ବ୍ୟକ୍ତିଙ୍କର ଦୀର୍ଘ ନିରାମୟ ଜୀବନ ପାଇଁ

ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା



**ଶ୍ରୀ ସୁରେଶ ଚନ୍ଦ୍ର ସାହୁ**

ମଙ୍ଗଳାବାଗ—କଟକ



# କୁଳବୃଦ୍ଧ ରାଧାନାଥ



**ଭୁପେନ ରଥ ଗାନ୍ଧୀ**

ଇତିହାସକୁ ଜୀବନ୍ତ ଦେଖିବାକୁଁ ଯଦି
ତେବେ ଆଖି ଭରି ଦେଖ;
ପରମ୍ପରା ଶିଖିବାକୁଁ ଯଦି ବନ୍ଧୁ,
ଶତାବ୍ଦୀର ପରଂପରା ଆଜି ପୁଣି ଶିଖ ।

ଶବ୍ଦର ହିମାଳୟ, ପ୍ରଜ୍ଞାର ସମୁଦ୍ର
ଆଉ ଜ୍ଞାନର ଗଗନ,
ସଦିଚ୍ଛାର ଜୀବନ୍ତ ପ୍ରତୀକ ଏବଂ
କରୁଣାର ଛବି ଅନୁପମ ।

ପରିଣତ ବୟସରେ ତଥାପି ତ
ଅନ୍ୱେଷୁଛନ୍ତି ମଣିଷର କ୍ଲେଶର କାରଣ,
ଜଳାଧାରେ ପ୍ରତୀକ୍ଷିତ ବକ ଯଥା
ଏକଲୟେ ଖୋଜିଥାଏ ମୀନ ।

ଉତ୍କଳମଣିଠାରୁ ଦୀକ୍ଷା ନେଇ
ଚାଲିଅଛନ୍ତି ମନ୍ତ୍ର ଜପି ଚରୈବେତିର,
କହୁଅଛନ୍ତି ଉତ୍ତିଷ୍ଠତ ହୁଅ ଆହେ
ଉତ୍କଳର ସୁପ୍ତ ନାରୀ, ନର !

ବଂଶ ଶେଷେ ହଜିଯାଏ ଭାଷା ଓ ସଂସ୍କୃତି
ଦେଖ ପୁରାତନ ଏ ମାଟି ମାଆର,
ତାକୁ ଯଦି ଖୋଜି-ଲୋଡ଼,
ପାଶେ ଆଣି ରଖି ନ ପାରିବ ତେବେ
ତୁମକୁ ତ ଭୁଲିବ ସଂସାର ।

ଏଇ କଥା ଶିଖାଉଛନ୍ତି ଏ ଯୁବ-ସ୍ଥବିର,
ନିଜ ପାଇଁ, ନିଜ ଅଧିକାର ପାଇଁ
ଲଢ଼ିବାକୁ ଶିଖ ଆହେ ଏ ଦେଶର
ନିଦ୍ରାଗତ ବୀର ।

ଦୁନିଆର କାହାଣୀରେ ଏ ଜାତିର
ମହାନ ଗାଥାକୁ ଗୁନ୍ଥି, ଏକସୂତ୍ରେ—
ସଂରଚନା କରିବାକୁ ମହାଗ୍ରନ୍ଥ
କରେ ଯେ ବନ୍ଧୁର,
ତା'ପାଇଁ ଉଠାଇ ହାତ କର ହେ ପ୍ରାର୍ଥନା
ସାଥୀ ! ପାଉ ସିଏ ଆୟୁ ପୁଣି
ବରଷ ହଜାର ।

ସହସ୍ର ବର୍ଷର ଏଇ କଟକ ନଗର,
ତା' ମଧ୍ୟେ କମଳସମ ଫୁଟିଅଛନ୍ତି,
ହସୁଅଛନ୍ତି ଯୁବକସୁଲଭ ଦମ୍ଭ
ହିଆରେ ଧାରଣ କରି
ଉତ୍କଳମଣିର ଏଇ ମାନସ-କୁମର ।

ଆହେ ରଥ ରାଧାନାଥ !
ସହସ୍ର ବର୍ଷର ଆୟୁ ଦେଉ ତୋତେ
ଜଗତର ନାଥ ।

ଅଧ୍ୟକ୍ଷ, ଓଡ଼ିଶା ରାଜ୍ୟ ଚମଡ଼ା ନିଗମ ଲିଃ, କଟକ,



# ପାରାଦ୍ୱୀପ ବିଜ୍ଞାପିତ ଅଞ୍ଚଳ ପରିଷଦ
# ସହରବାସୀଙ୍କୁ ସ୍ୱାଗତ ଜଣାଉଛି

## ବିଗତ ଦିନର ସାଫଲ୍ୟ

(୧) ୪୦ ଲକ୍ଷ ଟଙ୍କା ବ୍ୟୟରେ ଏନ୍. ଏ. ସି. ଉଚ୍ଚ ବିଦ୍ୟାଳୟର ଦୁଇ ମହଲା ଗୃହ ନିର୍ମାଣ ।
(୨) ପାରାଦ୍ୱୀପ ମହାବିଦ୍ୟାଳୟର ଗୃହ ନିର୍ମାଣ ନିମନ୍ତେ ୧୨. ୫ ଲକ୍ଷ ଟଙ୍କାର ଅନୁଦାନ ପ୍ରଦାନ ।
(୩) ବଡ଼ପଡ଼ିଆ ଓ ଅଠରବାଙ୍କୀଠାରେ ଦୁଇଟି ସୁଲଭ ଶୌଚାଳୟ ନିର୍ମାଣ ।
(୪) ଷଣ୍ଢକୁଦ ଓ ନୂଆବଜାରଠାରେ ଉ: ପ୍ରା ବିଦ୍ୟାଳୟ ଗୃହ ନିର୍ମାଣ ।
(୫) ଭିନଗଳିଆଠାରେ ଏନ୍. ଏ. ସି. ଏମ୍. ଇ. ସ୍କୁଲର ଗୃହ ନିର୍ମାଣ ।
(୬) ବିଦେଶୀ ମଶାମରା ଯନ୍ତ୍ର (Fogging Machine) ସାହାଯ୍ୟରେ ପାରାଦ୍ୱୀପ ଅଞ୍ଚଳରେ ମଶା ନିବାରଣ ।
(୭) ୪ ଲକ୍ଷ ଟଙ୍କା ବ୍ୟୟରେ ଅଠରବାଙ୍କୀଠାରେ ଏକ ଜେଟି (Jetty) ଓ ରାସ୍ତା ନିର୍ମାଣ ।
(୮) ଅଠରବାଙ୍କୀଠାରେ ମା ଅମ୍ବିକା ଉଚ୍ଚ ବିଦ୍ୟାଳୟ ଗୃହ ନିର୍ମାଣ ।
(୯) ୩୦ ଲକ୍ଷ ଟଙ୍କା ବ୍ୟୟରେ ଅଠରବାଙ୍କୀଠାରେ ସ୍ୱଳ୍ପ ଆୟକାରୀ ବ୍ୟକ୍ତିମାନଙ୍କ ଥଇଥାନ ନିମନ୍ତେ ୯୮ ଗୋଟି ଦୋକାନଗୃହ ନିର୍ମାଣ ।
(୧୦) ପି. ପି. ଏଲ ଠାରୁ ଅଠରବାଙ୍କୀ ପର୍ଯ୍ୟନ୍ତ ସ୍ୱର୍ଣ୍ଣାଲୋକ ପ୍ରଦାନ ।

## ଆଗାମୀ ଦିନର ସ୍ୱପ୍ନ

(୧) ୫୩ ଲକ୍ଷ ଟଙ୍କା ବ୍ୟୟରେ ନିଜସ୍ୱ ଅଫିସ ଗୃହ ନିର୍ମାଣ ।
(୨) ଅଠରବାଙ୍କୀଠାରେ ୨ୟ ପର୍ଯ୍ୟାୟ ଦୋକାନ ଗୃହ ନିର୍ମାଣ ।
(୩) ଅଠରବାଙ୍କୀଠାରେ ୪ ଲକ୍ଷ ଟଙ୍କା ବ୍ୟୟରେ ପ୍ରାଥମିକ ବିଦ୍ୟାଳୟ ଗୃହ ନିର୍ମାଣ ।
(୪) ଷଣ୍ଢକୁଦଠାରେ ହୋମିଓପାଥିକ ଡାକ୍ତରଖାନା ଗୃହ ନିର୍ମାଣ ।
(୫) ଏକ ଯାତ୍ରୀ ନିବାସ ନିର୍ମାଣ ।
(୬) ବସଷ୍ଟାଣ୍ଡରେ ଏକ ସୁଲଭ ଶୌଚାଳୟ ନିର୍ମାଣ ।
(୭) ଏନ୍. ଏ. ସି. ହାଇସ୍କୁଲରେ ଏକ ସାଇକେଲଷ୍ଟାଣ୍ଡ ନିର୍ମାଣ ।

**ଶ୍ରୀ ଧୀରେନ୍ କୁମାର ପଟ୍ଟନାୟକ**
ଓ. ଏ. ଏସ୍.
ନିର୍ବାହୀ ଅଧିକାରୀ

**ଶ୍ରୀ ରବୀନ୍ଦ୍ର ନାରାୟଣ ମିଶ୍ର**
ଓ. ଏ. ଏସ୍. (୧)
ନଗରପାଳ

# ଶ୍ରୀ ରାଧାନାଥ ରଥ

ଦୁର୍ଗାମାଧବ ମିଶ୍ର

ଜୀବନ ଗୋଟା ଖାଲି  ସମରେ କଟିଗଲା
ନିଦ୍ରା ହଜିଗଲା;  ସ୍ୱପ୍ନ ଦିଶୁଥିଲା :-
ଶସ୍ୟ ହରିତାଭ  ଜନନୀ ମୁଖେ ହସ
ଶୋଭିର ନିକେତନ  ମଧୁର ପରିବେଶ ।

ସପନ ସତେ ଅବା  ସଫଳ ହେଲା ବୋଲି
ଚାହିଁଲି ଚାରିଦିଗେ;  କାହିଁ ସେ ଶ୍ୟାମ ଶିଷ ?
ରୁଧିର ପ୍ରବାହରେ  ହିଲପେ ନଦୀ ନାଳ
ସନ୍ତରଣ କରେ  ମୁଣ୍ଡ ମାଳ ମାଳ ।

ଆଉଁସି ଦେଲ ଟିକେ;  ଲିଭିଲା ହୁତାଶନ
ମଳୟ ଛୁଇଁ ଦେଲା,  ସୃଜିଲା ଶିହରଣ ।
ତୁମର ପରିଜନ  ମନ୍ତ୍ରୀ. ନ୍ୟାୟାଧୀଶ
ସିଂହାସନେ ବସି  ଲେଖିଲେ ଉପଦେଶ ।

ନାଲି ଫିତାର ସାଥୀ  ଆସିଲା ନୀଳ ଫିତା
କାଗଜ ଲେଖା ହେଲା  ଦିନକୁ କଥା କଥା
କ୍ଷମତା ମୀନାରରେ  ଗାଲିଚା ଶୋଭାପାଏ
ଘଣ୍ଟି ଚିପିଦେଲେ  ପ୍ରହରୀ ଆସିଯାଏ ।

ଲଗିଲା କୁହୁ କୁହୁ,  ଘାରିଲା ଘୋର ନିଶା
ଆସିଲା ସୁର ସାଜ,  ଆସିଲେ ମୋନାଲିସା
ଚରଣ ତଳେ ଲୋଟେ ରଜତ ଶ୍ୱେତସାର
ବିପୁଳ ବୁକୁ ଫୁଲି  ଲୁଚିଲା ଚର୍ମ ହାଡ଼ ।

କି ହେଲା ଭାବି ଭାବି  ଲେଖନୀ ଉଠାଇଲି
ସମାଜ ପୃଷ୍ଠରେ  ଚାବୁକ ମାଳ ମାଳ
ଚକ୍ଷୁ ମୁଦି ଦେଇ  ସ୍ମରିଲି ତ୍ରିକୂଟରୁ
କି ହେଲା ? କି କରିବ ? ବକୁଳ ବନ ଗୁରୁ ?

ତୁମେ ତ ଚାଲିଗଲ  ଗଲେ ବି ସବୁ ସାଥୀ
ତୁମେ କି ଜାଣିଥିଲ  ଆସିବ କାଳ ରାତି
ଅକାଳେ ମିଶିଗଲ  ଏକାକୀ ଛାଡ଼ି ଦେଇ
ଏ ଜାତି, ଏ ଦେଶର  ଭରସା ନାହିଁ କେହି ।

'ଛାଡ଼ ତୁ ଭୟ, ହାତ  ବଦ୍ଧପରିକର
ଲେଖନୀ ଚାଲି ଯାଉ'  ଶୁଭିଲା କାହା ସ୍ୱର ।
ସେ ନାଦ ବ୍ରହ୍ମରେ  ସୁଗମ ହେଲା ପଥ
ବଂଶ ଶତକର  ନନ୍ଦଘୋଷ ହେ
ତୁମେ ଶ୍ରୀ ରାଧାନାଥ ରଥ ।

"ଚନ୍ଦ୍ରାଲୋକ", ପ୍ଲଟ୍ ନଂ ଡି ୮, ବିଜେବି ନଗର, ଭୁବନେଶ୍ୱର-୭୫୧୦୧୪



ଏବେ ବି କର୍ମମୁଖର



ଲୋକସେବକ ମଣ୍ଡଳର ବରିଷ୍ଠ କର୍ମକର୍ତ୍ତା, ବିଶିଷ୍ଟ ସାମ୍ବାଦିକ ଶ୍ରୀ ବିଜୟ ଗୁପ୍ତା ଏବଂ ତଥ୍ୟ ଓ ବେତାର ମନ୍ତ୍ରୀ ଶ୍ରୀ କାମାକ୍ଷାପ୍ରସାଦ ସିଂହଦେଓଙ୍କ ସହିତ ଆଲୋଚନାରତ । ( ୧୭ - ୪ - ୧୯୯୩)




ଓଡ଼ିଶା ନାରୀସେବା ସଂଘର ସୁବର୍ଣ୍ଣ ଜୟନ୍ତୀ ଉଦ୍‌ଘାଟନ

ଆଠଗଡ଼ଠାରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି ଉଦ୍‌ଘାଟନ (୧୧ - ୧୧  ୧୯୯୩)




ଢେଙ୍କାନାଳଠାରେ ଭାରତୀୟ ଗଣଯୋଗାଯୋଗ ପ୍ରତିଷ୍ଠାନ, ପୂର୍ବାଞ୍ଚଳ ଶାଖାର ଉଦ୍‌ଘାଟନ
( ୧୪ - ୮ - ୧୯୯୩)



ଭାରତୀୟ ଇତିହାସ ଓ ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମି ଉପରେ ଆଧାରିତ
ଧ୍ୱନି ଓ ଆଲୋକର କାର୍ଯ୍ୟକ୍ରମ ''ଔର କଦମ୍ ବଢ଼ତେ ରହେ''ର ଶୁଭାରମ୍ଭ




ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ମର୍ଯ୍ୟାଦାପୂର୍ଣ୍ଣ **'ଉତ୍କଳରତ୍ନ'** ଉପାଧି ପ୍ରଦାନ ଉତ୍ସବ




ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଶ୍ରାଦ୍ଧୋତ୍ସବ ପାଳନ ଅବସରରେ



ବନ୍ୟାଞ୍ଚଳକୁ ରିଲିଫ୍ ବଣ୍ଟନ ଉଦ୍ଦେଶ୍ୟରେ ନୌଯାତ୍ରା

# ମୂଲ୍ୟବୋଧର ମନୁଷ୍ୟ

ଶ୍ରୀ ହରିହର ବାହିନୀପତି

ଯେଉଁ କେତେକ ବ୍ୟକ୍ତି ନିଜର ବିବିଧ କର୍ମ ସାଧନା ଯୋଗୁ ଆଜି ବ୍ୟକ୍ତି ହୋଇ ନ ରହି ଅନୁଷ୍ଠାନରେ, ତାହା ପୁଣି ବିରାଟ ବିରାଟ ଅନୁଷ୍ଠାନରେ ପରିଣତ ହୋଇ ଯାଆନ୍ତି, ସେମାନଙ୍କ ମଧ୍ୟରେ ଡକ୍ଟର ରାଧାନାଥ ରଥ ଅନ୍ୟତମ । ଡକ୍ଟର ରଥ ଅନେକ ଦିନ ଧରି "ସମାଜ"ର ପରିଚାଳକ ଥିଲେ ଓ ବର୍ତ୍ତମାନ ସମ୍ପାଦକ ଅଛନ୍ତି । କିନ୍ତୁ ଯଥାର୍ଥରେ ସେ ଜଣେ ସମାଜର ସୁଦକ୍ଷ ପରିଚାଳକ ତଥା ସଂଚାଳକ । ତାଙ୍କ ଭଳି ବିଭିନ୍ନ ଗୁଣାବଳୀର ସମନ୍ୱିତ ବର୍ଷୀୟାନ୍ ବ୍ୟକ୍ତିତ୍ୱ ଓଡ଼ିଶାରେ ବିରଳ । ମୋ ବିଚାରରେ ପଦ୍ମଶ୍ରୀ ଇତ୍ୟାଦି କେତେକ ଉପାଧି ତାଙ୍କ କୃତିତ୍ୱ ପାଖରେ ମଳିନ ହୋଇପଡ଼ୁଛି ।

ଉତ୍କଳମଣି ଗୋପବନ୍ଧୁଙ୍କର ଯଥାର୍ଥ ଦାୟାଦ ଭାବରେ ଦେଶ ଓ ଦଶର ହିତ ସାଧନ ପାଇଁ, କେବଳ ସେବା ବା ତ୍ୟାଗ ନୁହେଁ, ସେଥିପାଇଁ ତିଳ ତିଳ କରି ଜୀବନକୁ ଉତ୍ସର୍ଗ କରିବାର ସଙ୍କଳ୍ପବୋଧର ସେ ଏକ ମୂର୍ତ୍ତିମନ୍ତ ପ୍ରତୀକ । ଏବେ ଅଳ୍ପଦିନ ତଳେ ମୋର ଏକ ଧାରାବାହିକ କାର୍ଯ୍ୟ ଭାବରେ, ଜଗନ୍ନାଥ ମିଶନର ମୁଖପତ୍ର, ଆଧ୍ୟାତ୍ମିକ ଓ ଦାର୍ଶନିକ ପତ୍ରିକା "ନିର୍ମାଲ୍ୟ" ପାଇଁ କାଗଜ ଖରିଦ କରିବାକୁ ଯାଇଥିଲି ଦୈନିକ "ସମାଜ"ର ମୁଦ୍ରଣ ତଥା କାର୍ଯ୍ୟାଳୟକୁ । ଦୈବାତ୍ ସେଦିନ ଦୃଷ୍ଟିପଡ଼ିଗଲା "ବାବୁଜୀ"ଙ୍କ ଉପରେ । ପ୍ରଣାମ କଲି । ମୋତେ ଠିକ୍ ଭାବରେ ଚିହ୍ନି ପାରିଲେ କି ନାହିଁ, ସନ୍ଦେହ କଲି । କାରଣ ମୋ ଭଳି ଅନେକ ବ୍ୟକ୍ତି ତାଙ୍କ ସଂସ୍ପର୍ଶରେ ଆସିଛନ୍ତି । ବୟସ ହେଲାଣି ଶହେକୁ ପାଖାପାଖି । ସାଂସାରିକ ଜୀବନର କେତେକ ଦୁର୍ବିସହ ଘାତ-ପ୍ରତିଘାତ ତାଙ୍କୁ ବି ଆକ୍ରାନ୍ତ କରିଛି । କିନ୍ତୁ ସତେ ଯେପରି ଭଗବତ ଗୀତା ଭାଷାରେ ସେ ସ୍ଥିତ-ପ୍ରଜ୍ଞ ଦଧୀଚିଙ୍କ ଭଳି ସାମଗ୍ରିକ ଓ ସାମୂହିକ କାର୍ଯ୍ୟ ପାଇଁ ଜୀବନକୁ ଅର୍ପଣ କରିବାକୁ ପ୍ରତିଜ୍ଞାବଦ୍ଧ । ସେଦିନ ସେହି ପରିଣତ ବୟସରେ ଦୈନିକ ସମାଜର ପରିଚାଳନା ଓ ସଂପାଦନା ଦାୟିତ୍ୱରେ ତାଙ୍କର କର୍ମ-ପରାୟଣତା ମୋତେ ଅଭିଭୂତ କରିପକାଇଲା । ମୁଁ ମନେ ମନେ ଭାବିଲି, ଦେଶର ସ୍ୱରାଜ ସଂଗ୍ରାମ ତଥା ବହୁବିଧ ସାଧନ ପାଇଁ ମହାତ୍ମା ଗାନ୍ଧି ଯେପରି ତାଙ୍କର ବିଭିନ୍ନ ସହଯୋଗୀ ଓ ରଥୀ ମହାରଥୀଙ୍କୁ ବାଛି ନେଇଥିଲେ, ସେହିପରି ଉତ୍କଳର ଗାନ୍ଧି ଗୋପବନ୍ଧୁ ସେହି ଯଜ୍ଞ ପାଇଁ ତାଙ୍କର ସହକର୍ମୀ-ମାନଙ୍କୁ ଖୋଜିଲାବେଳେ ଡକ୍ଟର ରଥଙ୍କ ଭଳି ତତ୍କାଳୀନ ମେଧାବୀ ଯୁବକ ସାଧକ ଯେ କି ସରକାରୀ କର୍ମଚାରୀ ଭାବରେ ଆଗରୁ କର୍ମରେ ଯୋଗ ଦେଇ ସାରିଥିଲେ, ତାଙ୍କ ଉପରେ ଦୃଷ୍ଟି ପକାଇ-ଥିଲେ । ସତକୁ ସତ ଆଜକୁ ପ୍ରାୟ ଅଶୀ ବର୍ଷ ତଳର ଲୋଭନୀୟ ସରକାରୀ ଚାକିରିକୁ ଜଳାଞ୍ଜଳି ଦେଇ, ଦେଶମାତୃକାର ସେବା ବେଦୀରେ ବିଭିନ୍ନ କର୍ମ ପରିସରରେ ଅର୍ଥାତ୍ ସ୍ୱାଧୀନତା ସଂଗ୍ରାମଠାରୁ ଆରମ୍ଭ କରି ନିର୍ଭୀକ ତଥା ସଚ୍ଚୋଟ ସାମ୍ବାଦିକତାର ଆଜୀବନ ପୂଜାରୀ ଭାବରେ ଡକ୍ଟର ରାଧାନାଥ ରଥ ସର୍ବାଗ୍ରେ ଅଭିନନ୍ଦନୀୟ ।

ସେଦିନ ଡକ୍ଟର ରଥଙ୍କୁ 'ସମାଜ' କାର୍ଯ୍ୟାଳୟରେ କର୍ତ୍ତବ୍ୟରତ ଦେଖି, ଅବଶ୍ୟ ସାମାନ୍ୟ ଦୂରରୁ ମୋ ମାନସ ଚକ୍ଷୁରେ ଅନେକ ଦୃଶ୍ୟ ଜାଗିଉଠିଲା । ୧୯୫୭ ଓ ୧୯୬୭ ମସିହାରେ ମୁଁ ଯଥାକ୍ରମେ ଓଡ଼ିଶାର ବିଧାନସଭାର ସଭ୍ୟ ଓ ଉପବାଚସ୍ପତି ଥିଲାବେଳେ ଡକ୍ଟର ରଥ ଯଥାକ୍ରମେ ଡକ୍ଟର

ହରେକୃଷ୍ଣ ମହତାବଙ୍କ କଂଗ୍ରେସ ମନ୍ତ୍ରିମଣ୍ଡଳ ଏବଂ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସ୍ୱତନ୍ତ୍ର ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳରେ, ଅର୍ଥ ବିକାଶ ଇତ୍ୟାଦି ବିଭାଗର ମନ୍ତ୍ରୀ ଓ ସ୍ୱାଧୀନ ସଭ୍ୟ । ମନ୍ତ୍ରୀ ଭାବରେ ବିଧାନ ସଭାରେ ବିଭିନ୍ନ ପ୍ରଶ୍ନର ଉତ୍ତର ଦେଲାବେଳେ କିମ୍ବା କୌଣସି ବିଷୟରେ ଆଲୋଚନା କଲାବେଳେ, କି ନିଷ୍ଠା, ଆନ୍ତରିକତା ଓ ସର୍ବୋପରି ଦଳୀୟ ରାଜନୀତିକ ଦୃଷ୍ଟି-ଭଙ୍ଗୀର ବହୁ ଊର୍ଦ୍ଧ୍ୱରେ ସେ ରହନ୍ତି । ସେହିଭଳି ସ୍ୱାଧୀନ ସଭ୍ୟ ଭାବରେ ଆଲୋଚନା କଲାବେଳେ, ସମ୍ପୃକ୍ତ ବିଷୟରେ କେବଳ ଜଣେ ବିଶେଷଜ୍ଞଙ୍କ ଭଳି ନୁହେଁ, ବରଂ ଗଭୀର ଅନୁଶୀଳନ ତଥା ପାରଦର୍ଶିତାର ପ୍ରତିଫଳନ ମିଳେ ତାଙ୍କ ବକ୍ତବ୍ୟରୁ । ଏସବୁ ପ୍ରତ୍ୟକ୍ଷ ଅନୁଭୂତିର କଥା । ଓଡ଼ିଶାରୁ ବିଚ୍ଛିନ୍ନ ହୋଇଥିବା ଖରସୁଆଁ ଆଉ ସରାଇକେଲା ଅଞ୍ଚଳକୁ ଓଡ଼ିଶାରେ ପୁନର୍ବାର ସାମିଲ କରିବା ବିଶେଷତଃ ମୟୂରଭଞ୍ଜ ଜିଲ୍ଲାର ସମ୍ମିଶ୍ରଣ ପରେ ବି, ରାଜ୍ୟ ପୁନର୍ଗଠନ କମିଶନ ସୁପାରିଶ ନ କରିବାରୁ, ୧୯୫୬ ମସିହାରେ ସାରା ରାଜ୍ୟରେ ତୀବ୍ର ଆନ୍ଦୋଳନ ପ୍ରକାଶ ପାଇଥିଲା । ପୁରୀରେ ଏହି ଅସନ୍ତୋଷର ପ୍ରତିକ୍ରିୟା ସର୍ବାଧିକ ହୋଇଥିଲା ଏବଂ ଜଣେ ଛାତ୍ରଙ୍କ ସମେତ ଅନ୍ୟ ଜଣଙ୍କର ପୁଲିସ ଗୁଳିକାଣ୍ଡରେ ମୃତ୍ୟୁ ହୋଇଥିଲା । ଏହି ଆନ୍ଦୋଳନ ସହିତ ମୁଁ ନିବିଡ଼ ଭାବରେ ଜଡ଼ିତ ଥିଲି ଏବଂ ୧୯୫୭ ମସିହାରେ ବିଧାନସଭାକୁ ପୁରୀ ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହେବା ପରେ, ଖରସୁଆଁ, ସରାଇକେଲା ଏବଂ ସଦର ସିଂହଭୂମିକୁ ଅନ୍ତତଃ ଓଡ଼ିଶାରେ ସାମିଲ କରିବାକୁ ବିଧାନସଭାରେ ଗୋଟିଏ ବେସରକାରୀ ପ୍ରସ୍ତାବ ଆକାରରେ ଆଗତ କରିଥିଲି, ଯାହାକି ସର୍ବସମ୍ମତି-କ୍ରମେ ଗୃହୀତ ହୋଇଥିଲା । ସେହି ପ୍ରସ୍ତାବ ଗ୍ରହଣ ସମୟରେ ଡକ୍ଟର ରଥ ସରକାରଙ୍କ ପକ୍ଷରୁ ଜଣେ ମନ୍ତ୍ରୀ ଭାବରେ ଯେଉଁ ତଥ୍ୟ-ପୂର୍ଣ୍ଣ ଅଥଚ ଭାବ-ବିହ୍ୱଳିତ ଭାଷଣ ଦେଇଥିଲେ, ତାହା ଏବେ ମଧ୍ୟ ମୋ କର୍ଣ୍ଣରେ ଝଙ୍କୃତ ହୁଏ । ରମ୍ଭାରେ ସେହିଦିନ ଉତ୍କଳ ସମ୍ମିଳନୀର ସଭାପତି ଭାବରେ ଓଡ଼ିଶାରେ ବିଭିନ୍ନ ଉପାନ୍ତ ଅଞ୍ଚଳର କେବଳ ଓଡ଼ିଶା ସଙ୍ଗେ ମିଶ୍ରଣ ପାଇଁ ନୁହେଁ, ସେସବୁ ଅଞ୍ଚଳରେ ଗଠନ-ମୂଳକ କାର୍ଯ୍ୟକ୍ରମ କରି ବିଲୁପ୍ତ ହେବାକୁ ବସିଥିବା ଉତ୍କଳୀୟ ଭାଷା ଓ ସଂସ୍କୃତିର ପୁନରୁଦ୍ଧାର ପାଇଁ ଯେଉଁ ଦିଗ୍‌ଦର୍ଶନ ଦେଇଥିଲେ, ତାହା ବାସ୍ତବିକ୍ ପ୍ରଣିଧାନଯୋଗ୍ୟ । ମୋ ଆଖି ଆଗରେ ପୁଣି ଭାସି ଉଠିଲା, ସେହିଦିନ ଭୁବନେଶ୍ୱରରେ ରାଜ୍ୟପାଳଙ୍କ ନିବାସରେ ୧୯୭୭ର ସାମ୍ବାଦିକ ସମ୍ମିଳନୀ । ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇଙ୍କ ଏହି ସାମ୍ବାଦିକ ସମ୍ମିଳନୀର ଅଗ୍ରଭାଗରେ ବରିଷ୍ଠ ସାମ୍ବାଦିକ ଭାବରେ ବସିଥାଆନ୍ତି ଡକ୍ଟର ରଥ । ଦେଶର ବିଭିନ୍ନ ଜାତୀୟ ସମସ୍ୟା ଉପରେ ଦେଶର ଅନ୍ୟତମ ବର୍ଷୀୟାନ ରାଜନୀତିଜ୍ଞ ତଥା ପ୍ରଧାନମନ୍ତ୍ରୀଙ୍କୁ ସୂକ୍ଷ୍ମ ପ୍ରଶ୍ନ କରୁଥାଆନ୍ତି, ଏବଂ ପ୍ରଧାନମନ୍ତ୍ରୀ ସେସବୁର ଉତ୍ତର ଦେଉଥାଆନ୍ତି । ରାଜନୀତିକ ଜୀବନରେ କେବଳ ନୁହେଁ, ଭାରତୀୟ ସଂସ୍କୃତି ଓ ପରମ୍ପରାର ପବିତ୍ର ମାନବିକ ମୂଲ୍ୟବୋଧର କଷଟିପଥର ଉପରେ ବହୁ ପରୀକ୍ଷିତ ଅଥଚ ସଫଳ ଓ ବିରଳ ବ୍ୟକ୍ତିତ୍ୱଧାରୀ ଡକ୍ଟର ରଥଙ୍କୁ ଆଜ ତାଙ୍କର ୯୮ତମ ବର୍ଷର ପଦାର୍ପଣରେ ପ୍ରଣିପାତ ଜଣାଇ, ଆହୁରି ଅନେକ ବର୍ଷ ଏପରି ପଦାର୍ପଣର କାମନା କରୁଛି । କାରଣ ଆଜିର ସମାଜରେ ଏହି ମୂଲ୍ୟବୋଧର ଯେତେବେଳେ ପ୍ରବଳ ଅବକ୍ଷୟ ଘଟୁଛି, ସେତେବେଳେ ବଚନ ଏବଂ ସାଧନ ଭିତରେ ଅକଳନ ପାର୍ଥକ୍ୟ ରହିଯାଉଛି । ସେସବୁର ସମନ୍ୱିତ ବର୍ଷୀୟାନ୍ ବ୍ୟକ୍ତିମାନେ ଯେ ଏବେ ମଧ୍ୟ ଆମ ଗହଣରେ ଅଛନ୍ତି, ଏହାର ଦୃଷ୍ଟାନ୍ତ ପାଇଁ ଡକ୍ଟର ରଥ ଯେ ଅନ୍ୟତମ, ଏହା ନିଃସନ୍ଦେହରେ କୁହାଯାଇପାରିବ ।

କଲେଜ ରୋଡ଼, ପୁରୀ

# ଉତ୍କଳ ରତ୍ନ

ଅନାଦି ସାହୁ

୧୯୯୩ ଜୁନ୍ ମାସ । ଶ୍ରୀରାମଚନ୍ଦ୍ର ଭବନ ଲୋକାରଣ୍ୟ । ତରୁଣ, ବୃଦ୍ଧ, ମହିଳା, ବାଳକ, ବାଳିକା ଭର୍ତ୍ତି । ଓଡ଼ିଶାର ଲବ୍ଧପ୍ରତିଷ୍ଠ ବ୍ୟକ୍ତିମାନଙ୍କର ପ୍ରତିକୃତି ଅନେଇଛନ୍ତି ତଳକୁ, ମଞ୍ଚ ଉପରକୁ । ଅନେଇଛନ୍ତି କୁଳବୃଦ୍ଧ, ଅନେଇଛନ୍ତି ଉତ୍କଳମଣି । ଅତି ଗାମ୍ଭୀର୍ଯ୍ୟ ଏବଂ ରାଜକୀୟ ଠାଣିରେ ଦେଖୁଛନ୍ତି ମୟୂରଭଞ୍ଜ ମହାରାଜା, ପାରଳା-ମହାରାଜା । ଦେଖୁଛନ୍ତି ସାମନ୍ତବର୍ଗ---ପଠାଣି ସାମନ୍ତ, ଜଳନ୍ଧରଦେବ, ରାଧାମୋହନ ନରେନ୍ଦ୍ର । କିଏ କେତେ କଳ୍ପନା କରିବ । ଓଡ଼ିଶା ଗଠନର ଉଦ୍ୟୋକ୍ତା, ଯେମିତିକି ମୂର୍ତ୍ତିମନ୍ତ ହୋଇଉଠୁଛନ୍ତି ଏଠାରେ । ଓଡ଼ିଆ ଭାଷାକୁ ଗାମ୍ଭୀର୍ଯ୍ୟପୂର୍ଣ୍ଣ, ମର୍ଯ୍ୟାଦାବନ୍ତ କରୁଥିବା ଚିରଞ୍ଜୀବୀ ସାହିତ୍ୟିକ ରାଧାନାଥ. ମଧୁ ରାଓ, ଗଙ୍ଗାଧର, ଫକୀରମୋହନ ଅନେଇଛନ୍ତି । ସମସ୍ତଙ୍କୁ ଦେଖିଛନ୍ତି ସେ । ଅନୁପ୍ରାଣିତ ହୋଇଛନ୍ତି । ଉଦ୍‌ବୁଦ୍ଧ ହୋଇ କାମ କରିଛନ୍ତି ଜୀବନସାରା । ପ୍ରାୟ ଗୋଟାଏ ଶତାବ୍ଦୀ ଧରି ନିରଳସ ସାଧନା, ତପସ୍ୟା, ତ୍ୟାଗରେ ହିଁ ଭୋଗକରିବା ପ୍ରବଳ ଇଚ୍ଛା । ସେ ଈଶୋପନିଷଦର ମହତବାଣୀ-ତେନ ତ୍ୟକ୍ତେନ ଭୁଞ୍ଜିଥାଃ-ମାଗୃଧଃ କସ୍ୟଚିଦ୍ ଧନମ୍‌ର ମୂର୍ତ୍ତିମନ୍ତ ପ୍ରତୀକ ।

ପରାଧୀନ ଭାରତ, ଖଣ୍ଡିତ ଓଡ଼ିଶା । ଭାରତର ସ୍ୱାଧୀନତା ପାଇଁ ପ୍ରୟାସ । ତା ସହିତ ଓଡ଼ିଶାର ଏକୀକରଣ । କାହିଁ ସୁଦୂର ସିଂହଭୂମି । କାହିଁ ଭଞ୍ଜଭୂମି ଗଞ୍ଜାମ, କୁଆଡ଼େ ରହିଛି ସୁରେନ୍ଦ୍ର ସାଏର କର୍ମଭୂମି । ଉତ୍କଳମଣିଙ୍କର ଯେଉଁ କେତେଜଣ ଉପଯୁକ୍ତ ଶିଷ୍ୟ ଥିଲେ ତା'ଭିତରେ ସେ ଜଣେ । ସତ୍ୟବାଦୀ ପ୍ରେସ୍, ସମାଜ କାଗଜର ପରିଚାଳନା, ଓଡ଼ିଆ ଭାଷାର ବିସ୍ତାର, ଉତ୍କଳ ସମ୍ମିଳନୀର ପୃଷ୍ଠପୋଷକତା । ଏସବୁ ସମ୍ଭବ କେମିତି ହେବ ! ଏହା ହୋଇପାରିବ ଯାହା ପାଖରେ ଆଧିଦୈବିକଶକ୍ତି ରହିଥିବ—ସେ ଗୋଟାଏ ଯୁଗର ନିର୍ଦ୍ଧାରକ ହୋଇ ପାରିବ । ସିଏ ପଥପ୍ରଦର୍ଶକ ହୋଇ ଅନ୍ୟକୁ ବାଟ ଦେଖାଇ ପାରିବ । ବାଟ ଦେଖାଇବା ଏତେ ସହଜ ନୁହେଁ । ବାଟ ଦେଖାଇଲେ ଯେ ଅନ୍ୟମାନେ ସେ ବାଟରେ ଯିବେ, ତାହା ମଧ୍ୟ ନିଧାର୍ଯ୍ୟ ନୁହେଁ । ବାଟ ଦେଖାଇବା ବ୍ୟକ୍ତିର ମହତ୍ତ୍ୱ, ଉଦାର ମନୋଭାବ ଏବଂ ସେବା ହିଁ ଅନ୍ୟକୁ ଅନୁପ୍ରାଣିତ କରିବ. ସେହି ବାଟରେ ଯିବାପାଇଁ । ବାଟ ଦେଖାଇବା ବ୍ୟକ୍ତି ଅଶେଷ କଷ୍ଟ ସହି ବାଟ ତିଆରି କରିବେ— ଏହି ବାଟରେ ଚାଲ । ଏହି ବାଟ ମଣିଷ ସମାଜ ପାଇଁ ମଙ୍ଗଳକର । ଏ ବାଟ ଦେଶ ପାଇଁ ଶୁଭଦାୟକ । ଏ ବାଟ ପ୍ରତ୍ୟେକ ମନୁଷ୍ୟ ପାଇଁ ଇଷ୍ଟଦାୟକ । ଗଭୀର ମନନ, ଅନୁଧ୍ୟାନ, ଅଧ୍ୟୟନ ଏବଂ ଉପାସନା ନଥିଲେ ସେ ବାଟ ମିଳେ ନାହିଁ । ସେ ବାଟକୁ ନେଇ ମଣିଷର ମଣିଷତ୍ୱ ପ୍ରମାଣ କରନ୍ତି ସେ । ସେଥିପାଇଁ ଗୀତାରେ ଅଛି—ସ ଯତ୍ ପ୍ରମାଣଂ କୁରୁତେ ଲୋକଃ ତତ୍ ଅନୁବର୍ତ୍ତିତେ । କ'ଣ ଭଲ, କଣ ଭେଲ, ସେ ନିଜ ଉପରେ ନିଜେ ପରୀକ୍ଷା କରୁଥିଲେ । ଶାସକ ହୋଇ କହୁଥିଲେ···ସାମ୍ବାଦିକ ହୋଇ ଲେଖୁଥିଲେ, ଲେଖୁଛନ୍ତି ଅନ୍ୟମାନଙ୍କ ପାଇଁ । ଶତସହସ୍ର ବ୍ୟକ୍ତି ଉଦ୍‌ବୁଦ୍ଧ ତାଙ୍କ ଲେଖା ମାଧ୍ୟମରେ । ସମାଜର ପୃଷ୍ଠା ଅଙ୍କିତ ତାଙ୍କ ନିର୍ଭୀକ ସମ୍ପାଦକୀୟରେ—ବର୍ଷ ବର୍ଷ ଧରି । କିଏ ପର, କିଏ ନିଜର ସେ କେବେ ଚିନ୍ତାକରନ୍ତି ନାହିଁ । ସେ ପରାପର ଭେଦର ଉପରେ ।

ସେ ଉତ୍କଳରତ୍ନ ରାଧାନାଥ । ଉଣେଇଶ ଶହ ତେୟାନବେ ମସିହାରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ଉତ୍କଳରତ୍ନ ସମ୍ବର୍ଦ୍ଧିତ । ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଉପସ୍ଥିତ ଜଷ୍ଟିସ୍ ହରିହର ମହାପାତ୍ର । ଅତୀତର ରୋମନ୍ଥନ ହେଲା । ଚକ୍ରଧର ପୁର ଅଞ୍ଚଳରେ ଓଡ଼ିଆ ଭାଷାର ବିକାଶ ପାଇଁ ଦାସ ଆପଣଙ୍କ ପ୍ରରୋଚନାରେ ଯାଇଥିଲେ ଶ୍ରୀ ରାଧାନାଥ ରଥ । ଶ୍ରୀ ହରିହର ମହାପାତ୍ର ସେତେବେଳେ ବାଳକ । କି କଷ୍ଟ ସେ ସାଧନା । କି ମହତ୍ତ୍ୱପଣିଆ ! ସୁଦୂର ପ୍ରବାସରେ ଲୁପ୍ତପ୍ରାୟ ଓଡ଼ିଆ ଭାଷାକୁ ବିଚ୍ଛିନ୍ନାଞ୍ଚଳରେ ବଞ୍ଚେଇରଖିବା ପାଇଁ କେତେ କଷ୍ଟ ! କେବଳ ଭୁକ୍ତଭୋଗୀ ହିଁ ଜାଣିପାରିବେ । ଜାଣିଥିଲେ ଉତ୍କଳରତ୍ନ । ସେ ଓଡ଼ିଶାର ଶହେ ବର୍ଷର ଇତିହାସ, ପୂର୍ବ ଜୀବନର ଦ୍ରଷ୍ଟା । ତାଙ୍କଠାରେ ସେହି ଆପ୍ତବାଣୀ ପ୍ରଯୁଜ୍ୟ—

ପଶ୍ୟେମ ଶରଦଃ ଶତମ୍

× × ×

ଭୂୟେମ ଶରଦଃ ଶତମ୍ ।

ଭୂୟସୀ ଶରଦଂ ଶତାତ୍ ।

ସେ ଶତପର ବର୍ଷ ଯାଏଁ ଏହି ଓଡ଼ିଶା ଉପରେ ଶରତକାଳୀନ ନିର୍ମଳ ଚନ୍ଦ୍ରକିରଣ ବିଛେଇଦିଅନ୍ତୁ । ବର୍ଷର ସବୁଠାରୁ ସ୍ନିଗ୍ଧ ଶରତ ଚନ୍ଦ୍ରରେ ଏ ଓଡ଼ିଶାକୁ ଆହୁରି ନୂତନ ଦିଗ୍‌ଦର୍ଶନ ଦିଅନ୍ତୁ ।

ସଭାପତି, ଉତ୍କଳ ସାହିତ୍ୟ ସମାଜ



# ବାବୁଜୀଙ୍କୁ ଚିଠି

ପୂଜ୍ୟ ବାବୁଜୀ,

ପ୍ରଣାମ ।

ଆଜ ଆପଣଙ୍କର ୯୮ତମ ଜନ୍ମ ସ୍ମନକ୍ଷତ୍ର । ଏଥି-ପାଇଁ କେବଳ ମୁଁ ନୁହେଁ ମୋ ପରି ଅନେକ ତଥା ସମଗ୍ର ଓଡ଼ିଶାବାସୀ ଗର୍ବିତ । କାରଣ ଆପଣ ଏକ-ମାତ୍ର ବର୍ଷୀୟାନ । କେବଳ ଜଣେ ଦକ୍ଷ ସାମ୍ବାଦିକ ଭାବରେ ନୁହେଁ ବରଂ ଜଣେ ପୋଖତ ରାଜନୀତିଜ୍ଞ, ସ୍ୱାଧୀନତା ସଂଗ୍ରାମୀ, ଦିଗଦର୍ଶକ, ସଂସ୍କାରକ, ସମାଜସେବୀ ଓ ଦୀନ ଦୁଃଖୀର ଆଶା ଭରସାର ପ୍ରତୀକ ଭାବରେ ଆପଣ ଆଜ ଏକମାତ୍ର ବ୍ୟକ୍ତି । ରାଜ୍ୟର ଆବାଳବୃଦ୍ଧବନିତା ଆପଣଙ୍କ ସହିତ ପରିଚିତ । ସତେ ଯେପରି ପ୍ରତ୍ୟେକ ଅଞ୍ଚଳ ଆପଣଙ୍କ ନଖଦର୍ପଣରେ । ଏବେ ମଧ୍ୟ ଲୋକମାନଙ୍କର ଆପଣଙ୍କ ପ୍ରତି ଅନାବିଳ ସ୍ନେହ, ଆକର୍ଷଣ ଓ ଭକ୍ତି ରହିଛି ।

ବୟସାଧିକ ହେତୁ ଆପଣ ଯାଇପାରୁନାହାନ୍ତି । କିନ୍ତୁ ଆଜ ବି କୌଣସି ଅଞ୍ଚଳରେ କିଛି ପ୍ରାକୃତିକ ବିପର୍ଯ୍ୟୟ କିମ୍ବା ଦୈବ ଦୁର୍ବିପାକ ହେଲେ ଆପଣଙ୍କ କଥା ମନରେ ଆସେ । ଆପଣ ଯିବା ଅବସ୍ଥାରେ ନାହାନ୍ତି ସତ କିନ୍ତୁ ଆପଣ ଏ ରାଇଜଟା ସାରା ଯାହା ଦେଇଆସିଛନ୍ତି ତାହା ଅପାସୋର ରହିଛି, ରହିଥିବ ମଧ୍ୟ । ଯେଉଁଳି ଥିଲେ ଗୋପବନ୍ଧୁ । ବାସ୍ତବିକ ଆପଣ ତାଙ୍କର ଉପଯୁକ୍ତ ଦାୟାଦ । କିନ୍ତୁ ବାବୁଜୀ ଆପଣ ବସିଗଲେ ସତ ! ହେଲେ ସେହି ପରମ୍ପରା କ୍ରମେ ଯେଉଁଳି ଘୁଞ୍ଚିଘୁଞ୍ଚି ଗଲାଭଳି ଲାଗୁଛି । ଏହା ଦେଖି ମନେହେଉଛି କ'ଣ ଆପଣଙ୍କ ସେବା ମନୋବୃତ୍ତିର ଦାୟାଦ କେହି ନାହିଁ ?

ବାସ୍ତବରେ ବାବୁଜୀ ଆପଣ ହେଉଛନ୍ତି ଆମର ଗର୍ବ ଓ ଗୌରବର ପ୍ରତୀକ । ସେହି ଗର୍ବ ଓ ଗୌରବକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଆପଣ ଯେ ଚିନ୍ତିତ ନୁହଁନ୍ତି ମୁଁ ମନା କରି ପାରୁନାହିଁ । କିନ୍ତୁ ଆପଣଙ୍କ ଆଦର୍ଶରେ ଯେଉଁ ଶୂନ୍ୟତା ଅନୁଭବରେ ଆସୁଛି, ତାହା କ'ଣ ଆପଣ ଜାଣିପାରୁ ନାହାନ୍ତି ?

କ୍ଷମା କରିବେ ବାବୁଜୀ, ଲେଖୁ ଲେଖୁ ଅନେକ କଥା ଲେଖି ଦେଲିଣି । ଅବଶ୍ୟ ଏହା ମୋର କଥା ନୁହେଁ, ସଭିଙ୍କର । କାରଣ ଆପଣ ଓ 'ସମାଜ' ଅନୁଷ୍ଠାନ କିଏ ବା ନ ଜାଣେ, ଯିଏ ଆପଣଙ୍କ ପାଖକୁ ଆସିଛି ସେ ଜାଣିଛି । କିନ୍ତୁ ଆଜ ସବୁ ଓଲଟିଯାଇଛି ।

ତଥାପି ବାବୁଜୀ ଆପଣ ବସିଛନ୍ତି ଏହାହିଁ ଆମପାଇଁ ଯଥେଷ୍ଟ । ଆପଣ ସେହିଭଳି ବସିଥାନ୍ତୁ ଓ ଜଗନ୍ନାଥ ଆପଣଙ୍କୁ ଶତାୟୁ କରନ୍ତୁ ଏବଂ ଆପଣଙ୍କ ଗହଣରେ ଆମେ ଆପଣଙ୍କର ଶତବାର୍ଷିକୀ ପାଳନ କରିବାର ସୁଯୋଗ ପାଉ, ଏହାହିଁ ଆଶା କରି ରହିଲୁ ।

ସମ୍ମାନର ସହ

**ନିତ୍ୟାନନ୍ଦ ସାମନ୍ତରାୟ**



# ଇତିହାସ ମନେ ରଖିବ

## କୃଷ୍ଣଚନ୍ଦ୍ର ଭୂୟାଁ

ସାହିତ୍ୟ, ଶିକ୍ଷା, ସମାଜସେବା, ବିଜ୍ଞାନ, ଶିଳ୍ପ-କଳା, ସଂସ୍କୃତି, ଧର୍ମ, ରାଜନୀତି ଓ ସାମ୍ବାଦିକତା କ୍ଷେତ୍ରରେ ବର୍ତ୍ତମାନ ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ନାମ ଶୁଣାଯାଏ । ସେମାନଙ୍କ ନାମ ତାଲିକାଭୁକ୍ତ କଲେ ବିରାଟ ହେବ । ଯଦି ଶହେ ବର୍ଷ ପରେ ବର୍ତ୍ତମାନ ସମାଜର ମୂଲ୍ୟାଙ୍କନ କରାଯିବ, ଏହି ତାଲିକାରୁ ଅନେକ ବାଦ ପଡ଼ିବେ; ଅର୍ଥାତ୍ ତାଲିକାଟି ଶ୍ରେଷ୍ଠ ହୋଇଯିବ । କାଳିଦାସ ଓ ବାଲ୍ମୀକିଙ୍କ ସମସାମୟିକ ବହୁ କବି ଥିଲେ । ସେମାନେ କିନ୍ତୁ ହଜିଗଲେ କାଳର ଗର୍ଭରେ, ବଞ୍ଚି ରହିଲେ କେବଳ କାଳିଦାସ, ବାଲ୍ମୀକି । ସମୟ ଏକ ବଡ଼ ବିଚାରପତି । ବିଚାରରେ ସେ ଖୁବ୍ ନିରପେକ୍ଷ । କିଏ ଅସଲି, କିଏ ନକଲି, କିଏ କେତେ ଅସଲି, କିଏ କେତେ ନକଲି ସେ ଠିକ୍ ଚିହ୍ନିପାରେ । ଯାହାର ଯେତିକି ପ୍ରାପ୍ୟ ତାକୁ ସେ ସେଥିରୁ ବଞ୍ଚିତ କରିବ ନାହିଁ । କାଯ଼ଦା କୌଶଳ ଓ ଧନ୍ଦା କରି ଯିଏ ଯେତେ ଉପରକୁ ଉଠୁନା କାହିଁକି; କବି, ଲେଖକ, ସମାଜସେବୀ, ରାଜନୀତିଜ୍ଞ, ବୈଜ୍ଞାନିକ, ଶିଳ୍ପୀ ଭାବରେ ଯିଏ ଯେତେ ପ୍ରତିଷ୍ଠିତ ହେଉନା କାହିଁକି; ସମୟ ତାକୁ ଅତି ନିର୍ମମ ଭାବରେ ପ୍ରତ୍ୟାଖ୍ୟାନ କରିବ । ପ୍ରତ୍ୟାଖ୍ୟାନ କରିବ ନାହିଁ ସେହିମାନଙ୍କୁ ଯେଉଁମାନେ ନିଷ୍ଠା, ନିସ୍ୱାର୍ଥପରତା, ଆନ୍ତରିକତା, ଆଦର୍ଶ ଓ ବ୍ୟକ୍ତିତ୍ୱ ବଳରେ ନିଜକୁ ପ୍ରସ୍ତୁତ କରିଥିବେ ଓ ସମାଜର ସେବା କରିଥିବେ ।

ଏହିଭଳି ଜଣେ ବ୍ୟକ୍ତିଙ୍କ ନାମ ରାଧାନାଥ ରଥ । ଇତିହାସ ପୃଷ୍ଠାରେ ତାଙ୍କ ନାମ ଲିପିବଦ୍ଧ ହୋଇ ରହିବ । ଶହେ ବର୍ଷ କାହିଁକି ସହସ୍ର ବର୍ଷ ପରେ ବି ସେ ହଜିଯିବେ ନାହିଁ । ସମାଜସେବା, ସାମ୍ବାଦିକତା, ଶିକ୍ଷା, ରାଜନୀତି, ଶାସନପ୍ରଭୃତି କ୍ଷେତ୍ରରେ ତାଙ୍କର ଭୂମିକା ଐତିହାସିକ । ସମାଜ-ସେବା କ୍ଷେତ୍ରରେ ତାଙ୍କର ନିଷ୍ଠା ଯେପରି, ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ତ୍ୟାଗ ସେପରି । ରାଜନୀତି, ଶାସନ, ସ୍ୱାଧୀନତା ସଂଗ୍ରାମ କ୍ଷେତ୍ରରେ ତାଙ୍କର ନିସ୍ୱାର୍ଥପରତା ଓ ଆନ୍ତରିକତା ଯେପରି ଲକ୍ଷଣୀୟ, ଶିକ୍ଷା ପ୍ରସାର ସାଂସ୍କୃତିକ ବିକାଶ ଓ ସାମାଜିକ କ୍ଷେତ୍ରରେ ତାଙ୍କର ଦୃଢ଼ତା, ନିସ୍ୱାର୍ଥପରତା ଓ କାର୍ଯ୍ୟ କ୍ଷମତା ସେପରି ଉଲ୍ଲେଖଯୋଗ୍ୟ । ଏହିସବୁ ମହତ ଗୁଣରେ ସମନ୍ୱିତ ଜଣେ ବ୍ୟକ୍ତି ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଆଦର୍ଶ ଓ ପ୍ରେରଣାର ଉତ୍ସ ହୋଇ ରହିବେ । ସେ ହଜିଯିବେ ନାହିଁ କିମ୍ବା ଇତିହାସ ପୃଷ୍ଠାରେ ତାଙ୍କ ନାମ ଲୁପ୍ତ ଯିବ ନାହିଁ । ସମୟର ବିଚାରରେ ଓ ଇତିହାସ ପୃଷ୍ଠାରେ ଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନ, ଲାଲବାହାଦୁର, ନେହେରୁ, ପ୍ରମୁଖ ବରପୁତ୍ରମାନେ ଯେଉଁଭଳି ପ୍ରତିଷ୍ଠିତ ଓ ସମ୍ମାନିତ ରାଧାନାଥ ରଥ ସେହିଭଳି ପ୍ରତିଭାତ ହେବେ, ଏଥିରେ ସନ୍ଦେହ ନାହିଁ ।

୪ ପ୍ରିୟନାଥ ବାନାର୍ଜୀ ଷ୍ଟ୍ରୀଟ, କଲିକତା-୭୦୦୦୦୯



# ବର୍ଷୀୟାନ୍ ସାମ୍ବାଦିକ

## ରମେଶ ଭୂୟାଁ

ବର୍ଷୀୟାନ୍ ସାମ୍ବାଦିକ, ଓଡ଼ିଆ ଗଣମାନସର ଅନ୍ୟତମ ବରିଷ୍ଠ ବ୍ୟକ୍ତିତ୍ୱ ଦୈନିକ ଓ ସାପ୍ତାହିକ 'ସମାଜ'ର ସମ୍ପାଦକ, ଜନନାୟକ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ଚଳିତ ଶତାବ୍ଦୀର ଝମପ୍ରବଣ ଓ ଗୁଣାତ୍ମକ ବିଶ୍ଳେଷଣରେ ବିଶ୍ୱାସ କରୁଥିବା ଐତିହାସିକ ଚରିତ୍ର । ତାଙ୍କ ଜୀବନଧାରା ହିଁ ସାଧନା । ବିଗତ ଅର୍ଦ୍ଧଶତାବ୍ଦୀର ସାମାଜିକ ସାଂସ୍କୃତିକ ରାଜନୈତିକ ଜୀବନଧାରା ହିଁ ତାଙ୍କ ଜୀବନ କାହାଣୀ ସହ ଓତପ୍ରୋତ ଭାବେ ଜଡ଼ିତ । ବିଶେଷତ୍ୱ ଏହି ଯେ ପ୍ରାକୃତିକ ଓଡ଼ିଶାର ପ୍ରତିଟି ସ୍ପନ୍ଦନକୁ ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ପଣ୍ଡିତ ଗୋପବନ୍ଧୁଙ୍କ ପରମ ସହଯୋଗୀ ଭାବରେ ଏ ପର୍ଯ୍ୟନ୍ତ ମଣିଷର ଦୁଃଖ ସମୟରେ ସାହାଯ୍ୟ, ସହଯୋଗ କରି ଆସିଛନ୍ତି । ପୃଥିବୀ, ଭାରତ ଓ ଓଡ଼ିଶା ବିଷୟରେ ଅସୀମ ଜ୍ଞାନର ଅଧିକାରୀ ଏହି ଅସାଧାରଣ ବ୍ୟକ୍ତି ତାଙ୍କ ମହାନୁଭବତା ବଳରେ ଅଗଣିତ ଜନମାନସରେ ନିଜର ବ୍ୟକ୍ତିତ୍ୱର ପ୍ରତିଫଳନ କରିପାରିଛନ୍ତି।

ଅଧ୍ୟୟନ ହିଁ ତାଙ୍କ ଜୀବନର ମହାନ୍ ବ୍ରତ ଓ ଅନୁସନ୍ଧିତ୍ସା ହିଁ ତାଙ୍କୁ ମଣିଷ ମନର ବେଦନା ଚିହ୍ନିବାକୁ ପ୍ରେରଣା ଦେଇଛି ।

ଡକ୍ଟର ରାଧାନାଥଙ୍କ ଅକ୍ଷୟ କୀର୍ତ୍ତି ହେଉଛି 'ସମାଜ ଅନୁଷ୍ଠାନ', ଏହା ଇତିହାସ ଓ ସମୟ ନିଶ୍ଚୟ ସ୍ୱୀକାର କରିବ । ଉତ୍କଳମଣିଙ୍କ ଇଚ୍ଛାପତ୍ର ସମୟର 'ସମାଜ' ଓ ବର୍ତ୍ତମାନର 'ସମାଜ' ମଧ୍ୟରେ ଆକାଶ ପାତାଳର ପ୍ରଭେଦ ।

ଏବେ ସେହି ବରିଷ୍ଠ ବ୍ୟକ୍ତିତ୍ୱର ଦୃଢ଼ତା ଓ ସ୍ୱାଭିମାନକୁ ଆମେ ଅନୁସରଣ କରିବା ଓ ଜୀବନରେ ଦୁଇଟି ଶତାବ୍ଦୀ ଦେଖିଥିବା ବାବୁଜୀ ଭବିଷ୍ୟ ଶତାବ୍ଦୀରେ ପାଦ ରଖନ୍ତୁ, ଏହା ଶ୍ରୀ ଜଗନ୍ନାଥଙ୍କ ନିକଟରେ ନିବେଦନ କରିବା ।

ପ୍ରଫେସରପଡ଼ା, କଟକ-୭୫୩୦୦୧



# କଟକ ପୌର ପରିଷଦ, କଟକ,

ଓଡ଼ିଶାର ବରିଷ୍ଠ ରାଜନୀତିଜ୍ଞ, ଦାର୍ଶନିକ ତଥା ବର୍ଷୀୟାନ ସାହିତ୍ୟିକ **ପଦ୍ମଭୂଷଣ ଡଃ ରାଧାନାଥ ରଥ** ୯୮ତମ ଜୟନ୍ତୀ ପାଳନ ଅବସରରେ କଟକ ପୌର ପରିଷଦ ତାଙ୍କର ନିରୋଗ ଦୀର୍ଘାୟୁ ଜୀବନ କାମନାକରୁଛି । ମହାନଗରବାସୀଙ୍କ ସୁସ୍ଥ, ସମୃଦ୍ଧି ଜୀବନ ପାଇଁ ତାଙ୍କର ସହଯୋଗ ଓ ଆଶୀର୍ବାଦ ଭିକ୍ଷା କରୁଛି ।

**ରଥୀନ୍ଦ୍ର ନାଥ ପାଢ଼ୀ**
ନିର୍ବାହୀ ଅଧିକାରୀ

**ତ୍ରିଲୋଚନ କାନୁନ୍‌ଗୋ**
ନଗରପାଳ

**ବିଜୟ ମହାପାତ୍ର**
ଉପନଗରପାଳ

**ସ୍ମିତା ମୁଲିଆ**
ଅତିରିକ୍ତ ଉପନଗରପାଳ

## କାଉନ୍‌ସିଲର ବୃନ୍ଦ

ବଙ୍କିମ୍ ଦାସ, ପ୍ରତାପ ଦାସ, ବୀଣାପାଣି ପଣ୍ଡା, ଶେଷଦେବ ନନ୍ଦ, ହେମନ୍ତ ବେହେରା, ଓ. ପି. ଗୁପ୍ତା, ଭରତୀ ଦାଶ, ଏ. ଅହାଲୀ, ମଳୟ ଶଙ୍କର ରାୟ, କାଲେ ଖାଁ, ପ୍ରଦୀପ ପଟ୍ଟନାୟକ, କାଶୀନାଥ ମଲ୍ଲିକ୍, ଗଣେଶ ଚନ୍ଦ୍ର ସାହୁ, ଡା : ଭି ଦୁର୍ଗା ପ୍ରସାଦ, ପ୍ରଦୀପ୍ ସ୍ୱାଇଁ, ଶରତ ଦାଶ୍, ପର୍ଣ୍ଣୁରାମ ଜେନା, ସମର ମହମ୍ମଦ, ମହେଶ୍ୱର ଦାସ, ପ୍ରଭାକର ମାଡ଼ଗୁଲୁ, ଦେବେନ୍ଦ୍ର ଖୁଣ୍ଟିଆ, ବସନ୍ତମଞ୍ଜରୀ ପଟ୍ଟନାୟକ, ପୁଷ୍ପଲତା ରାଉତ, ରଶ୍ମିନା ସାହୁ, କ୍ଷେତ୍ରମୋହନ ସାହୁ, କଳ୍ପନା ବେଉରା, ପଦ୍ମାବତୀ ସ୍ୱାଇଁ, ପ୍ରତିମା ମହାରଣା,

ବର୍ଷୀୟାନ୍ ସାମ୍ବାଦିକ, ବୟୋଜ୍ୟେଷ୍ଠ

ଜନନାୟକ ଓ ସ୍ୱାଧୀନତା-ସଂଗ୍ରାମୀ

## ଡକ୍ଟର ରାଧାନାଥ ରଥଙ୍କ

ଦୀର୍ଘ କର୍ମମୟ ଜୀବନ କାମନା କରୁଛୁ ।

## ଓଡ଼ିଶା ମେଡ଼ିକାଲ ସର୍ଭିସେସ୍ ଆସୋସିଏସନ (ଓ.ମ.ସା.)

---

*Wishing a long & hectic life*

# DOLPHIN BUS SERVICE

**Prop—DEBENDRA SAHOO**

SAFE AND RELIABLE SERVICE IS OUR MOTO

# ORISSA CONSTRUCTION
# &
# T. E. C. S. LTD

**Regd. Off. 88, Bapuji Nagar, Near Venus Inn,**
**P.O. BHUBANESWAR—751 009**



*Happily announces the commencement of construction of the Housing Project*
*at BADA RAGHUNATHPUR (TOMANDO) near Bhubaneswar*
*for the members of ECONOMICALLY WEAKER SECTION*
*ON THE AUSPICIOUS 98th. birthday of*
*our most respected and beloved*
**Dr. RADHANATH RATH**

*Sd/- MANAGING DIRECTOR*
*on behalf of the Board of Directors and Staff.*